ପ୍ରାଚୀ ଗ୍ରନ୍ଥମାଳା—ବିଂଶ

# ଉଷାଭିଳାଷ

---

ପ୍ରଧାନ ସଂପାଦକ—

ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍. ଏ.

ଶ୍ରୀଶୁ ଶଙ୍କର

# ଉଷାଭିଳାଷ

ଶିଶୁଶଙ୍କର ଦାସଙ୍କ କୃତ

ଉଷା-ଉଦ୍ଭାସିନୀ ଟୀକା ଓ ମୁଖବନ୍ଧ ସହ

ପ୍ରାଚୀ ସମିତି ଦ୍ୱାରା

ସଂକଳିତ ଓ ପ୍ରକାଶିତ



ମୂଲ୍ୟ ଆଠଅଣା ମାତ୍ର

# ଭୂମିକା

'ଉଷାଭିଳାଷ' ଓଡ଼ିଆର ପ୍ରାଚୀନ-ସାହିତ୍ୟ-ଭଣ୍ଡାରର ଏକ ଅମୂଲ୍ୟରତ୍ନ ଅଟେ । ଏହାର ପ୍ରଣେତା କବି ଶିଶୁ ଶଙ୍କର ଦାସ ଅତି ପ୍ରାଚୀନ ହେଲେହେଁ ଆଜି ପାଠକ ସାଧାରଣଙ୍କ ନିକଟରେ ଦୁର୍ଭାଗ୍ୟ-ବଶତଃ ସେ ସଂପୂର୍ଣ୍ଣ ନୂତନ ଓ ଅପରିଚିତ କହିଲେ ଚଳେ । ଏପର୍ଯ୍ୟନ୍ତ ଓଡ଼ିଆ-ସାହିତ୍ୟ-ରାଜ୍ୟର କାବ୍ୟ-ସିଂହାସନରେ ଉପେନ୍ଦ୍ରଭଞ୍ଜ ଅପରିହତ ପ୍ରତିଷ୍ଠା ଲାଭକରି ଆସୁଅଛନ୍ତି । କାରଣ ତାଙ୍କର ପୂର୍ବବର୍ତ୍ତୀ କବିମାନଙ୍କର କାବ୍ୟାଦି ଅଦ୍ୟାବଧି ପ୍ରକାଶିତ ହୋଇ ନାହିଁ । ବିକ୍ରମ ଓ ଧନଞ୍ଜୟ ପ୍ରମୁଖ ଭଞ୍ଜ ଉପାଧିଧାରୀ ମୁଷ୍ଟିମେୟ କବିଙ୍କର ନାମ ଶୁଣା ଯାଇଥାଏ ସତ, କିନ୍ତୁ ସେମାନଙ୍କ କବି-ପ୍ରତିଭାର ମହତ୍ତ୍ୱ କେବଳ କଥାରେ ପର୍ଯ୍ୟବସିତ ! ତେଣୁ କାବ୍ୟ-ରାଜ୍ୟରେ ଉପେନ୍ଦ୍ରଙ୍କ ପ୍ରତିଭାର ପ୍ରତିଦ୍ୱନ୍ଦିତା ଏପର୍ଯ୍ୟନ୍ତ ସମ୍ଭବପର ହୋଇ ନ ଥିଲା ଏବଂ ଆଜି ତାହାର ପ୍ରସ୍ତାବନା ଅନେକଙ୍କର ବିସ୍ମୟ-ଉତ୍ପାଦନ କରିବ ମାତ୍ର । ସେ ଯାହାହେଉ, ଶିଶୁ ଶଙ୍କରଙ୍କର ଏହି ଉଷାଭିଳାଷ ସେହି ପ୍ରତିଦ୍ୱନ୍ଦିତାର ପ୍ରଥମ ଶକୁନ ସ୍ୱରୂପ ଭଞ୍ଜକବିଙ୍କର ଅପରିହତା ମୂଳରେ ସାମାନ୍ୟ ଏକ ଆଘାତ ମାତ୍ର ପ୍ରଦାନ କରିବ । ଯେଉଁ ସାହିତ୍ୟ ସାଧନାର ନିରବଚ୍ଛିନ୍ନ ଧାରା ଉତ୍କଳର କାବ୍ୟ ଓ କବି ଜୀବନରେ ପରଂପରାକ୍ରମେ ଏ ପର୍ଯ୍ୟନ୍ତ ଚାଲି ଆସିଅଛି, ଉଷାଭିଳାଷ ତାହାର ମାଧ୍ୟମିକ ସ୍ଫୁରଣ—ଏଥିରେ ସନ୍ଦେହର ଅବକାଶ ନାହିଁ । ଏହାଛଡ଼ା ଆହୁରି ଯେ କେତେ କାବ୍ୟ-କବିତାର ସୃଷ୍ଟି ସେହି ମାଧ୍ୟମିକ

ସାଧନାର ଅଙ୍ଗକୁ ପୁଷ୍ଟ କରି ନ ଥିବ, ତାହା କୁହାଯାଇ ନ ପାରେ । ଭଞ୍ଜଙ୍କ କବିପ୍ରତିଭା ପରବର୍ତ୍ତୀ କାଳରେ ସେହି ସାଧନାର ଶୂନ୍ୟା-ବକାଶରେ ଫୁଟି ଉଠିଥିଲା ଏବଂ ତାହାର ପୂର୍ଣ୍ଣ ସ୍ଫୂର୍ତ୍ତିରେହିଁ ସେହି ସାଧନା ପରଂପରାର ଅପୂର୍ବ ପରିଣତି ହୋଇଥିଲା ବୋଲି କହିଲେ ଯଥେଷ୍ଟ ହେବ ।

ପ୍ରାଚୀନ କବିଗଣ ପ୍ରାୟ ସ୍ୱୀୟ କୃତିମାନଙ୍କରେ ନିଜ ନିଜର ପରିଚୟ ପ୍ରଦାନ କରିଥାନ୍ତି । କିନ୍ତୁ ଆମ୍ଭମାନଙ୍କ ଉଷାଭିଳାଷର କବି ଶିଶୁ ଶଙ୍କର ନିଜର କୌଣସି ପରିଚୟ ଗ୍ରନ୍ଥରେ ଲିପିବଦ୍ଧ କରି ନାହାନ୍ତି । ଗ୍ରନ୍ଥର ଆରମ୍ଭରେ, ପ୍ରତି ଛାନ୍ଦର ଶେଷରେ ଏବଂ ଷଷ୍ଠ ଛାନ୍ଦର ପ୍ରାରମ୍ଭରେ କୃଷ୍ଣଙ୍କର ଗୁଣକୀର୍ତ୍ତନ ଓ ବନ୍ଦନା ସେ ଯେଉଁ ପ୍ରଣାଳୀରେ କରି ଅଛନ୍ତି, ସେଥିରୁ ଜଣାଯାଏ ଯେ ସେ କୃଷ୍ଣଲୀଳାବିଷୟକ ପୁରାଣ-ଇତିହାସ ପାଠ କରିଥିଲେ, ଏବଂ ବୈଷ୍ଣବଧର୍ମାବଲମ୍ବୀ ଥିଲେ । ଭାଷା-ତତ୍ତ୍ୱଦିଗରୁ ବିଚାର କଲେ, ସେ ଭଞ୍ଜକବିଙ୍କର ବହୁ ପୂର୍ବବର୍ତ୍ତୀ ବୋଲି ସହଜରେ ଅନୁମିତ ହୁଏ । ମଯ୍ୟାଣ (ମଦନ), ଶଯ୍ୟଳ (ଶଇଳ), ନହେ (ନଖେ), ଭକ୍ଷୁ, କରହ, ହେବନ, ଯାହାଁ, ଆରେଣି ଓ ରତା ପ୍ରଭୃତି ଶବ୍ଦାବଳି ଓଡ଼ିଆ ଭାଷାର ପ୍ରାଚୀନ ରୀତିର ପରିଚାୟକ, ଏହା ଶବ୍ଦ-ତତ୍ତ୍ୱଜ୍ଞମାନେ ବିନା ଆପତ୍ତିରେ ସ୍ୱୀକାର କରିବେ । ଭଞ୍ଜଙ୍କ ସମସାମୟିକ ଓଡ଼ିଆ ଭାଷା ଅପେକ୍ଷାକୃତ ମାର୍ଜିତ, ବିକଶିତ ଅଥଚ ଅଳଙ୍କାର-ବହୁଳ, ତେଣୁ ପାଣ୍ଡିତ୍ୟପୂର୍ଣ୍ଣ ଅଟେ ।

ସେ ଯାହାହେଉ, ବର୍ତ୍ତମାନ ବିଭିନ୍ନଦିଗରୁ ସୂକ୍ଷ୍ମଭାବରେ ଆଲୋଚନା କରି ଶିଶୁ ଶଙ୍କରଙ୍କର ସଠିକ ସମୟ ନିରୂପଣ କରିବାର ଅବସର ଉପସ୍ଥିତ । ଏ ବିଷୟର ଅଭ୍ରାନ୍ତ ଆଲୋଚନା ପାଇଁ ଉଷା-

ଭିଳାଷର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ପ୍ରକାଶିତ ଓ ଅପ୍ରକାଶିତ ଓଡ଼ିଆ କାବ୍ୟମାନଙ୍କର ଅନୁଶୀଳନ ଆବଶ୍ୟକ । ଏ ପ୍ରସଙ୍ଗରେ କାର୍ତ୍ତିକ ଦାସଙ୍କ 'ରୁକ୍ମିଣୀବିଭା', ପ୍ରତାପରାୟଙ୍କ 'ଶଶିସେଣା,' ପଦ୍ମନାଭ ଶ୍ରୀଚନ୍ଦନଙ୍କ 'ଶଶିରେଖା,' କବି ଲୋକନାଥଙ୍କ ରଚିତ 'ଚନ୍ଦ୍ରକଳା', ରଘୁନାଥ ହରିଚନ୍ଦନଙ୍କ ଲୀଳାବତୀ ଏବଂ ଧନଞ୍ଜୟ ଭଞ୍ଜଙ୍କ 'ରତ୍ନମଞ୍ଜରୀ'— ଏହି ଛଅଗୋଟି ଅପ୍ରକାଶିତ କାବ୍ୟର ନାମ ଉଲ୍ଲେଖ ଯୋଗ୍ୟ । ଉକ୍ତ ଗ୍ରନ୍ଥମାନ ଆଲୋଚନା କଲେ ଜଣାଯାଏ ଯେ, ସେମାନଙ୍କ ଛାନ୍ଦ ବିଶେଷର ରାଗ ରାଗିଣୀରେ ଉଷାଭିଳାଷର ଛାନ୍ଦ ବିଶେଷର ବାଣୀ ନିର୍ଦ୍ଦେଶ କରାଯାଇଅଛି । ଏଥିରୁ ସହଜେ ଅନୁମିତ ହୁଏ ଯେ, ପ୍ରୋକ୍ତ ଲେଖକଗଣ ଯେଉଁ ସମୟରେ ସେମାନଙ୍କ କାବ୍ୟ ଗ୍ରନ୍ଥମାନ ପ୍ରଣୟନ କରିଥିଲେ, ସେ ସମୟରେ ଶିଶୁ ଶଙ୍କରଙ୍କ ଉଷା-ଭିଳାଷ ଦେଶରେ ବିଶେଷ ପ୍ରସିଦ୍ଧି ଲାଭ କରିଥିଲା ଏବଂ ପାଠକ ସାଧାରଣଙ୍କର ଅତି ପ୍ରିୟ ପାଠ୍ୟଗ୍ରନ୍ଥ ରୂପେ ପ୍ରଚଳିତ ହୋଇଥିଲା । ତେଣୁ ପାଠକମାନଙ୍କର ସହଜ ଅବବୋଧ ନିମିତ୍ତ ପରବର୍ତ୍ତୀ କାଳର ଉଲ୍ଲିଖିତ ଲେଖକଗଣ ସେହି ଗ୍ରନ୍ଥର ନାମ ସହ ବାଣୀର ଉଲ୍ଲେଖ କରିଅଛନ୍ତି । କବି କାର୍ତ୍ତିକ ଦାସ 'ରୁକ୍ମିଣୀ ବିଭା' ଗ୍ରନ୍ଥର ନବମ ଛାନ୍ଦରେ ଲେଖି ଅଛନ୍ତି—'ବଶ ମଙ୍ଗଳ, ଉଷା ୬ଷ୍ଠ ଛାନ୍ଦ ବାଣୀରେ ଗାଇବ', କବି ପ୍ରତାପରାୟ ତାଙ୍କ 'ଶଶିସେଣା' ଗ୍ରନ୍ଥର ତୃତୀୟ ଛାନ୍ଦରେ ଲେଖିଅଛନ୍ତି—'ଉଷା ୬ଷ୍ଠ ଛାନ୍ଦ ବାଣୀରେ ଗାଇବ', କବି ପଦ୍ମନାଭ ତାଙ୍କ 'ଶଶିରେଖା' ଗ୍ରନ୍ଥର ଦ୍ୱାବିଂଶତି ଛାନ୍ଦରେ ଲେଖି ଅଛନ୍ତି—'ଉଷା—ପଙ୍କଜ ବଦନ ଲୁଲେ ବାଣୀରେ ଗାଇବ' କବି ଲୋକନାଥ ତାଙ୍କ 'ଚନ୍ଦ୍ରକଳା' କାବ୍ୟର ୬ଷ୍ଠ ଛାନ୍ଦରେ ଲେଖିଅଛନ୍ତି— 'ଉଷା୬ଷ୍ଠ ଛାନ୍ଦ ବାଣୀରେ ଗାଇବ,' କବି ରଘୁନାଥ ତାଙ୍କ

'ଲୀଲାବତୀ' କାବ୍ୟର ନବମ ଛାନ୍ଦରେ ଲେଖିଅଛନ୍ତି—'ଭାବକୁ ନାହିଁ ଯେ ଭଗତ ଜନ ବନ୍ଧୁ—ଉଷା ୬ଷ୍ଟ ଛାନ୍ଦ ବାଣୀରେ ଗାଇବ,' ଏବଂ ଭଞ୍ଜକବି ଧନଞ୍ଜୟ ମଧ୍ୟ ତଦୀୟ ରତ୍ନମଞ୍ଜରୀ କାବ୍ୟର ପଞ୍ଚଦଶ ଛାନ୍ଦରେ ଉଷା-ଅଭିଳାଷର ପୂର୍ବୋକ୍ତ ପଦଟି ଉଲ୍ଲେଖ କରି ତାହାର ବାଣୀ ନିର୍ଦ୍ଦେଶ କରି ଅଛନ୍ତି । ଏହି ସବୁ ପ୍ରାଚୀନ ଲେଖାରୁ ସ୍ଥୂଳ ଭାବରେ ଏତିକି ଜଣାଯାଏ ଯେ, ଆମ୍ଭମାନଙ୍କର ବର୍ଣ୍ଣିତ କବି ଶିଶୁ ଶଙ୍କର ଉଲ୍ଲିଖିତ କବିମାନଙ୍କର ପୂର୍ବବର୍ତ୍ତୀ । ୬

'ରୁକ୍ମିଣୀବିଭା' କାବ୍ୟର ସମୟନିରୂପଣ ବର୍ତ୍ତମାନ ନାନା କାରଣରୁ ସମ୍ଭବପର ହୋଇ ପାରୁନାହିଁ । ତେଣୁ ତାହାର ସହାୟତାରେ ଶିଶୁ ଶଙ୍କରଙ୍କର ସମୟ ନିରୂପଣ ଏକପ୍ରକାର ଅସମ୍ଭବ । ସେହି ଗ୍ରନ୍ଥର ସଂକଳନ କାଳରେ ତାର ଆଲୋଚନାର ଉପଯୁକ୍ତ ଅବସର ଉପସ୍ଥିତ ହେବ ସତ୍ୟ, ତେବେ ଏ ସ୍ଥଳରେ ଏତିକି ମାତ୍ର କହି ରଖିବା ଉଚିତ ଯେ, ସେ ଗ୍ରନ୍ଥଟି ଅତି ପ୍ରାଚୀନ ଏବଂ ସେହି ହିସାବରେ ଉଷାଭିଳାଷ ତାହାର ପୂର୍ବବର୍ତ୍ତୀ ଓ ଶିଶୁ ଶଙ୍କର କବି କାର୍ତ୍ତିକଙ୍କର ପୂର୍ବବର୍ତ୍ତୀ । 'ଶଶିସେଣା' ପ୍ରଣେତା କବି ପ୍ରତାପ ରାୟ ଭଞ୍ଜକବି ଉପେନ୍ଦ୍ରଙ୍କ ପୂର୍ବବର୍ତ୍ତୀ ଯୁଗର ଲୋକ ଅଟନ୍ତି । 'ଶଶିସେଣା' ଗ୍ରନ୍ଥର ସଂକଳନ କାଳରେ ତାହାର ଯୁକ୍ତିଯୁକ୍ତ ପ୍ରମାଣ ପ୍ରଦର୍ଶିତ ହେବ । ତେବେ ବର୍ତ୍ତମାନ କ୍ଷେତ୍ରରେ ବୁଝିବାକୁ ହେବ ଯେ, କବି ଶିଶୁ ଶଙ୍କର ପ୍ରତାପ ରାୟଙ୍କର ଯଥେଷ୍ଟ ପୂର୍ବବର୍ତ୍ତୀ । 'ଶଶିରେଖା' ପ୍ରଣେତା ପଦ୍ମନାଭ ଭଞ୍ଜଯୁଗର ପରବର୍ତ୍ତୀ କାଳର କବି ବୋଲି ଜଣାଯାଇଅଛି । ଚନ୍ଦ୍ରକଳା ପ୍ରଣେତା କବି ଲୋକନାଥ ଷୋଡ଼ଶ ଶତାବ୍ଦୀର ଶେଷପାଦର ଲୋକ ଅଟନ୍ତି । ତେଣୁ ଶିଶୁ ଶଙ୍କର ଯେ ତାଙ୍କର ଯଥେଷ୍ଟ ପୂର୍ବବର୍ତ୍ତୀ ଏଥିରେ କୌଣସି ସନ୍ଦେହ ନାହିଁ । 'ଲୀଳାବତୀ' ପ୍ରଣେତା ରଘୁନାଥ ହରିଚନ୍ଦନ ବାଣପୁର

ରାଜା ଥିଲେ । ପାରସ୍ୟର ଇତିହାସ ଲେଖକଙ୍କ ମତରେ ତାଙ୍କର ରାଜତ୍ୱକାଳ ୧୬୫୫ ଠାରୁ ୧୬୫୬ ପର୍ଯ୍ୟନ୍ତ ବୋଲି ସ୍ୱୀକୃତ ହୋଇଅଛି । କିନ୍ତୁ ଆମ୍ଭେମାନେ ଏ ମତର ଅର୍ଥାତ୍ ବର୍ଷେ ମାତ୍ର ରାଜତ୍ୱ କରିଥିବା କଥାଟିର ପୃଷ୍ଠପୋଷକତା କରି ନ ପାରି ଦୁଃଖିତ । ତାହାର ସବିଶେଷ କାରଣ ଲୀଳାବତୀ କାବ୍ୟର ସଂକଳନ କାଳରେ ଆଲୋଚିତ ହେବ । ତେବେ ଏହା ସ୍ୱୀକାର୍ଯ୍ୟ ଯେ, ଲୀଳାବତୀ ପରି ଗୋଟିଏ ସୁବୃହତ୍ କାବ୍ୟ ପ୍ରଣୀତ ହେବାକୁ ଅନ୍ତତଃ ୪ । ୫ ବର୍ଷ ସମୟ ଓ ଗଭୀର ସାଧନା ଆବଶ୍ୟକ ହୋଇଥିବ । ଏହି ହିସାବରେ ଲୀଳାବତୀର ରଚନାକାଳ ୧୬୫୦ ଠାରୁ ୧୬୫୫ ମଧ୍ୟରେ ଧରିନେଲେ ଅସଙ୍ଗତ ହେବ ନାହିଁ । ଏହି ସମୟକୁ ଅର୍ଥାତ୍ ୧୬୫୫ ଖ୍ରୀଷ୍ଟାବ୍ଦ ବେଳକୁ ଉଷାଭିଲାଷ ଦେଶରେ ଯଥେଷ୍ଟ ପ୍ରସିଦ୍ଧି ଲାଭ କରିଥିଲା । ତେଣୁ ପାଠକ ସାଧାରଣଙ୍କର ସହଜ ଅବଗତି ନିମିତ୍ତ ଲୀଳାବତୀର କବି ନିଜଗ୍ରନ୍ଥରେ ତାହାର ବାଣୀ ଉଲ୍ଲେଖ କରିଅଛନ୍ତି । ପୁନଶ୍ଚ ଏତିକି ସ୍ମରଣ ରଖିବା କର୍ତ୍ତବ୍ୟ ଯେ, ଉଷାଭିଲାଷର ରଚନା ଏବଂ ପ୍ରସିଦ୍ଧିଲାଭ ଅବଶ୍ୟ ଦିନ ଅଧିକର କଥା ନୁହେଁ । ଅଳ୍ପ ସମୟ ମଧ୍ୟରେ କାବ୍ୟଟିର ରଚନାକାର୍ଯ୍ୟ ସମାପନ କବିଙ୍କ ପକ୍ଷରେ ସମ୍ଭବପର ହୋଇ ପାରିଥିବ । କିନ୍ତୁ ସମଗ୍ର ଦେଶରେ ତାହାର ପ୍ରଚାର ଏବଂ ପ୍ରସିଦ୍ଧି ଅର୍ଜନ ପାଇଁ ବହୁବର୍ଷ ଆବଶ୍ୟକ । କାରଣ ସେ ଯୁଗରେ ସଂବାଦପତ୍ର ବା ବାଷ୍ପୀୟଯାନାଦି ଏ ଦେଶରେ ନ ଥିଲା । ତେଣୁ ଶିଶୁଶଙ୍କରଙ୍କ କାବ୍ୟଟି ସମଗ୍ର ଦେଶରେ ପ୍ରଚାରିତ ହୋଇ ପ୍ରସିଦ୍ଧି ଲାଭ କରିବା ପାଇଁ ଅନ୍ତତଃ ୧୦୦ ରୁ ୧୫୦ ବର୍ଷ ପର୍ଯ୍ୟନ୍ତ ସମୟ ଆବଶ୍ୟକ ହୋଇଥିବ । ୧୬୫୫ ଖ୍ରୀଷ୍ଟାବ୍ଦକୁ 'ଲୀଳାବତୀ'ର ରଚନାକାଳ ବୋଲି ଯଦି ଧରି ନିଆଯାଏ, ତେବେ ତାହାର ୧୦୦ ବର୍ଷ ପୂର୍ବେ

ଉଷାଭିଳାଷର ରଚନାକାଳ ପଡ଼ିବ ଅର୍ଥାତ୍ ୧୫୫୫ ଖ୍ରୀଷ୍ଟାବ୍ଦ ବେଳକୁ ତାହା ପ୍ରଣୀତ ହୋଇଥିବା ସୁନିଶ୍ଚିତ ।

ଏତଦ୍‌ବ୍ୟତୀତ ରହସ୍ୟମଞ୍ଜରୀପ୍ରଣେତା ଧନଞ୍ଜୟଙ୍କ ବିଷୟର କଲେ ଉଷାଭିଳାଷର ପ୍ରୋକ୍ତ ସମୟ ନିରୂପଣ ଅଧିକତର ଦୃଢ଼ ହୁଏ । ଘୁମୁସର ଇତିହାସରୁ ମିଳେ ଯେ, ଧନଞ୍ଜୟ ଉପେନ୍ଦ୍ରଭଞ୍ଜଙ୍କର ପିତାମହ ଥିଲେ ଏବଂ ୪୬ ବର୍ଷ ରାଜପଣ କରିଥିଲେ । ଐତିହାସିକ-ମାନଙ୍କ ଗଣନା ଅନୁସାରେ ସେ ତାଙ୍କ ପୁତ୍ର ନୀଳକଣ୍ଠଙ୍କ ଦ୍ୱାରା ପ୍ରଯୋଗରେ ୧୭୦୧ ଖ୍ରୀଷ୍ଟାବ୍ଦରେ ଇହଧାମ ପରିତ୍ୟାଗ କରିଥିଲେ । ସେତେବେଳକୁ ତାଙ୍କର ବୟସ ୭୧ ବର୍ଷ ହୋଇଥିଲା । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ସେ ୧୬୩୦ ଖ୍ରୀଷ୍ଟାବ୍ଦରେ ଜାତ ହୋଇଥିଲେ ଏବଂ ୧୬୫୫ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିଲେ । ରହସ୍ୟମଞ୍ଜରୀ କାବ୍ୟର ରଚନାପ୍ରଣାଳୀ ଓ ବର୍ଣ୍ଣନାପାରିପାଟ୍ୟ ପ୍ରତି ଦୃଷ୍ଟି ଦେଲେ ଅନୁମିତ ହୁଏ ଯେ, ତାହା ଧନଞ୍ଜୟଙ୍କ ପ୍ରାଥମିକ କବିପ୍ରତିଭାର ନିଦର୍ଶନ । କାରଣ ସେଥିରେ ଅଦମ୍ୟ ଯୌବନର ନବୀନ ସ୍ପନ୍ଦନ ସଙ୍ଗେ ସଙ୍ଗେ ତାଙ୍କ ବିଳାସମୟ ଜୀବନର ଉଦ୍ଦାମ ଉଚ୍ଛ୍ୱାସ ଯଥେଷ୍ଟ ଦେଖାଯାଏ । ତେଣୁ ପ୍ରଥମ ଯୌବନରେ ବା ୨୦ । ୨୫ ବର୍ଷ ବୟଃକ୍ରମ କାଳରେ ଅର୍ଥାତ୍ ୧୬୫୫ ଖ୍ରୀଷ୍ଟାବ୍ଦବେଳକୁ ବା ତାହାର କିଛି ପୂର୍ବରୁ ରହସ୍ୟମଞ୍ଜରୀ କାବ୍ୟ ଲିଖିତ ହୋଇଥିବ । ଏଥିରୁ ଉଷାଭିଳାଷର ପ୍ରଣୟନ ଓ ପ୍ରସିଦ୍ଧି ଅର୍ଜନ ପାଇଁ ପୂର୍ବ ଗୃହୀତ ଏକଶତ ବର୍ଷ ସମୟ ଅନ୍ତର କଲେ ୧୫୫୫ ଖ୍ରୀଷ୍ଟାବ୍ଦରେ କବି ଶିଶୁଶଙ୍କର ତାଙ୍କ କାବ୍ୟ ପ୍ରଣୟନ କରିଥିବା ପ୍ରତୀତ ହୁଏ ।

ହରିହରସାହେବଙ୍କ ମତରେ ଶିଶୁଶଙ୍କର ସପ୍ତଦଶ ଶତାବ୍ଦୀର କବି । ଆମ୍ଭେମାନେ ଉପରେ ଯେଉଁ ପ୍ରମାଣମାନଙ୍କର

ଅବତାରଣା କରି କବିଙ୍କ ସମୟ ନିରୂପଣ କରିଅଛୁ ତାହା ଯେ ଭ୍ରାନ୍ତ ବିରହିତ, ଏହା ନିଃସନ୍ଦେହ । ହଣ୍ଟର ସାହେବ କେବଳ ଅନୁମାନ ବଳରେ ନିଜର ମତ ବ୍ୟକ୍ତ କରି ଅଛନ୍ତି ମାତ୍ର । ସେ କହନ୍ତି, ବିଶ୍ୱନାଥ ପାଠଜୋଷି ନାମକ ଜଣେ ଉତ୍କଳୀୟ ବ୍ରାହ୍ମଣ ଊଷାପରିଣୟ ନାଟକ ସଂସ୍କୃତ ଭାଷାରେ ଲେଖିଥିଲେ ଓ ଊଷାଭିଳାଷ ତାହାର ଅନୁବାଦ ମାତ୍ର । କିନ୍ତୁ ସେ ଗ୍ରନ୍ଥଟିର ସନ୍ଧାନ ଏ ପର୍ଯ୍ୟନ୍ତ ମିଳି ନାହିଁ । ବିଶ୍ୱନାଥଙ୍କ ସମୟ ନିରୂପଣ ମଧ୍ୟ ନିତାନ୍ତ ଦୁରୂହ । ତାଙ୍କର ପ୍ରତିଭା କି ପରିମାଣରେ କବି ଶିଶୁଶଙ୍କରଙ୍କୁ ପ୍ରଭାବିତ କରିଥିବ, ତାହା ଜାଣିବାର କୌଣସି ଉପାୟ ବର୍ତ୍ତମାନ ନାହିଁ ।

ଯେଉଁ ଆଖ୍ୟାନ ବା କଥାଭାଗର ଅବଲମ୍ବନରେ ଆମ୍ଭମାନଙ୍କର କବି ଶିଶୁଶଙ୍କର ଊଷାଭିଳାଷ ରଚନା କରି ଅଛନ୍ତି, ତାହା ଖିଲ ହରିବଂଶରେ ବିସ୍ତୃତ ଭାବରେ ଏବଂ ଭାଗବତ ଦଶମ ସ୍କନ୍ଧରେ ସଂକ୍ଷିପ୍ତ ଭାବରେ ବର୍ଣ୍ଣିତ ହୋଇଅଛି । ଏତଦ୍‌ବ୍ୟତୀତ ଶୂଦ୍ରମୁନି ସାରଳା ଦାସଙ୍କ ମହାଭାରତର ମଧ୍ୟପର୍ବରେ ମଧ୍ୟ ଊଷାଭିଳାଷର କଥାନକ ସ୍ଥାନ ପାଇଅଛି । ପାଠକ ସାଧାରଣ ନିଜ ନିଜର ଅବଗତି ନିମିତ୍ତ ସେ ବର୍ଣ୍ଣନା ମୂଳ ଗ୍ରନ୍ଥରୁ ପାଠ କଲେ ଉତ୍ତମ ରୂପେ ଜାଣି ପାରିବେ । ବର୍ତ୍ତମାନ ଦେଖିବାକୁ ହେବ ଯେ, କବି ହରିବଂଶ ଓ ଭାଗବତର ସେହି କଥାଭାଗକୁ ନିଜର କଳ୍ପନା ଓ ପ୍ରତିଭା ସଂଯୋଗେ କିପରି ଅଭିନବ ମୂର୍ତ୍ତି ପ୍ରଦାନ କରି ପାରି ଅଛନ୍ତି କିମ୍ବା ନାୟକ ନାୟିକାମାନଙ୍କର ଚରିତ୍ରଚିତ୍ରଣ କରିବାକୁ ଯାଇ ସ୍ୱୀୟ କଳା-କୁଶଳତାର ପରିଚୟ କି ଭାବରେ ପ୍ରଦାନ କରି ଅଛନ୍ତି । ଊଷାଭିଳାଷ ପାଠ କଲେ ଜଣାଯାଏ ଯେ, କବି ପୁରାଣର ସେହି କଥାଭାଗକୁ ବିଚିତ୍ର ରାଗରାଗିଣୀ-ସମ୍ବଳିତ ଦ୍ୱାଦଶ ଛାନ୍ଦରେ ଶୃଙ୍ଖଳିତ କରିଅଛନ୍ତି ।

ବାଣ-ନନ୍ଦିନୀ ଉଷାର ପ୍ରେମାଭିଳାଷ ପରିପୂରଣ ଏହାର ପ୍ରତିପାଦ୍ୟ ବିଷୟ। କାମ-ନନ୍ଦନ ଅନିରୁଦ୍ଧ ଏହାର ନାୟକ ଏବଂ ଉଷା ନାୟିକା। ଏତଦ୍‌ବ୍ୟତୀତ ପ୍ରସଙ୍ଗର ଅନୁରୋଧରେ କବି ନାୟକ ନାୟିକା ଉଭୟଙ୍କ ପ୍ରେମାଭିଳାଷର ପରିପୋଷକ ଓ ପରିପନ୍ଥୀ ରୂପେ ବାଣ, କୁମ୍ଭାଣ୍ଡ ମନ୍ତ୍ରୀ, ମନ୍ତ୍ରିତନୟା ଚିତ୍ରଲେଖା, ମହର୍ଷି ନାରଦ ଓ କୃଷ୍ଣ ପ୍ରଭୃତି ପାତ୍ର ପାତ୍ରୀଙ୍କର ଅବତାରଣା ଯେ ଭାବରେ କରି ଅଛନ୍ତି, ତାହା ଅନେକାଂଶରେ ହରିବଂଶ ଓ ଭାଗବତର ଅନୁରୂପ କହିଲେ ଚଳେ। ଗ୍ରନ୍ଥଟିର ଅବୟବ କ୍ଷୁଦ୍ର ହେଲେହେଁ ସେଥିରେ ଅଳଙ୍କାର ଶାସ୍ତ୍ରବର୍ଣ୍ଣିତ କାବ୍ୟର ସକଳ ଲକ୍ଷଣ ଦେଖିବାକୁ ମିଳେ।

**ପ୍ରଥମ ଛାନ୍ଦରେ** କବି ପ୍ରଥମତଃ ନମସ୍କ୍ରିୟା, ସାଧୁସ୍ତୁତି, ଖଳନିନ୍ଦା ଓ ବସ୍ତୁ ନିର୍ଦ୍ଦେଶ କରି ଶେଷରେ ବଳି-ନନ୍ଦନ ବାଣାସୁରର ଅବତାରଣା କରିଅଛନ୍ତି। ହରିବଂଶର ବାଣ ବାହୁସହସ୍ରଧାରୀ ଅସୁର ବିଶେଷ। କାର୍ତ୍ତିକେୟଙ୍କ ରୂପର ମୋହରେ ମୁଗ୍ଧ ହୋଇ ସେ ମହାଦେବଙ୍କ ପୁତ୍ରତ୍ୱ ଲାଭ କରିବାକୁ ଲାଳାୟିତ ଏବଂ ସେଥିପାଇଁ କଠୋର ତପସ୍ୟା କରିବାକୁ ସୁଦ୍ଧା ପଶ୍ଚାତ୍‌ପଦ ନୁହେଁ। ତପସ୍ୟାରେ ଶିବଙ୍କୁ ସନ୍ତୁଷ୍ଟ କରି ସେ ତାହାଙ୍କର ଅନୁଗ୍ରହ ଆକର୍ଷଣ କରି ପାରି ଅଛି ଏବଂ ଭ୍ରାତୃତ୍ୱ-ବନ୍ଧନରେ କାର୍ତ୍ତିକେୟଙ୍କଠାରୁ ମୟୂରଧ୍ୱଜ ଓ ମୟୂରବାହନ ମଧ୍ୟ ଲାଭ କରିଅଛି। କିନ୍ତୁ ଉଷାଭିଳାଷର ବାଣ ବାହୁସହସ୍ରଧାରୀ ନ ହେଲେହେଁ ଅମିତ ବଳବିକ୍ରମଶାଳୀ ସେହି ଅସୁର ବିଶେଷ। ତଥାପି ତାହାର ଚରିତ୍ରରେ ମାନବୋଚିତ ସକଳ ଗୁଣାବଳୀର ସୁନ୍ଦର ସମାବେଶ ଦେଖିବାକୁ ମିଳେ। ସକଳ ପ୍ରକାର ଶ୍ରୀସମ୍ପଦ ଓ କଳା ବିଭବରେ ତଦୀୟ ରାଜଧାନୀ ଶୋଣିତପୁର ଅଳକାକୁ ଜିଣି ଯାଇଥିଲା। ସେଥିରେ ପୁଣି ଅମିତବିକ୍ରମୀ ବାଣ ଏକାଧିକବାର

ଦେବରାଜ ଇନ୍ଦ୍ରଙ୍କୁ ସୁଦ୍ଧା ପରାଜିତ କରି ସ୍ୱୀୟ ବାହୁବଳର ପରାକାଷ୍ଠା ଦର୍ଶାଇଅଛି ଏବଂ ତପସ୍ୟାରେ ଶିବଙ୍କୁ ସନ୍ତୁଷ୍ଟ କରି ବାହୁସହସ୍ର ଧାରଣ କରିବାକୁ ବର ପାଇଅଛି । ଏପରି ଜଣେ ପ୍ରସିଦ୍ଧ ଅଦମ୍ୟ ରାଜାଙ୍କୁ ସାମାନ୍ୟ ଗୋଟାଏ ରୂପର ମୋହରେ ଅନ୍ଧ କରି ତପସ୍ୱୀ ବେଶରେ ସଜାଇଲେ ତାଙ୍କର ଚରିତ୍ର ଚିତ୍ରଣରେ ଅଙ୍ଗହାନି ଘଟିବ— ଏହି ଆଶଙ୍କାରେ କବି ଶିଶୁଶଙ୍କର କାବ୍ୟର ଗୁରୁତା ସମ୍ବିଧାନାର୍ଥ ସ୍ୱକାବ୍ୟ-ବସ୍ତୁ ସଗ୍ରଥନ ଚାତୁର୍ଯ୍ୟରେ ଅନ୍ୟ ପ୍ରକାରେ ସେହି ତପସ୍ୟାର ଅବତାରଣା କରି ଅଛନ୍ତି । କାବ୍ୟଟିର ସେହି ଅଂଶ ପାଠ କଲେ ଜଣାଯାଏ, ଯେପରି ତ ଗୋଟାଏ ନିଷ୍କାମ ତପସ୍ୟା ବାଣର ଚରିତ୍ରରେ ଅରୋପିତ ହୋଇଅଛି । ତପସ୍ୟାର ଉଦ୍ଦେଶ୍ୟ ନିର୍ଦ୍ଦେଶିତ ନ ହେବାହିଁ କାବ୍ୟର ଚମତ୍କାରିତା ! ଶେଷରେ ଏହି ଅଯାଚିତ ନିଷ୍କାମ-ତପସ୍ୟାଟି ମହାଦେବଙ୍କ ବର ପ୍ରଦାନରେ ସ୍ପଷ୍ଟ ସକାମ ତପସ୍ୟାରେ ପରିଣତ ହୋଇଥିଲେହେଁ ତାହା ଚରିତ୍ର ଚିତ୍ରଣରେ କବିଙ୍କର ସିଦ୍ଧହସ୍ତତା ଦର୍ଶାଇବା ସଙ୍ଗେ ସଙ୍ଗେ ବାଣର ଚରିତ୍ରକୁ ଉନ୍ନତ ଓ ମହତ୍ କରି ପାରିଅଛି !

ଉଷାଭିଳାଷର ବର୍ଣ୍ଣନାରୁ ଜଣାଯାଏ ଯେ, ଏକଦା ବାଣ ଶିବଙ୍କ ସମୀପରେ ଉପସ୍ଥିତ ହୋଇ ପ୍ରାର୍ଥନା କଲା :—

"ସହସ୍ରେ ବାହୁବଳ ନୋହେ ସହି । ତ୍ରିଭୁବନେ ତ ମୋତେ ସମାନ ନାହିଁ ।
ତୋର ସମାନ ଜଣେ ଯୋଦ୍ଧା ଦେଇ । ବଳ ଶାନ୍ତ ମୋର କର ଗୋସାଇଁ ।"

ଏହି ଉକ୍ତିରେ ଶିବ କ୍ରୁଦ୍ଧ ହୋଇ ଉଠିଲେ ଏବଂ ଯେତେବେଳେ ରଥରୁ ମୟୂରଧ୍ୱଜ ପତିତ ହେବ, ସେତେବେଳେ ଏକ ମହାଯୁଦ୍ଧ ସଂଘଟିତ ହେବ ବୋଲି କହିଲେ । ହରିବଂଶର ବର୍ଣ୍ଣନା ଅନେ-କାଂଶରେ ଏହାର ଅନୁରୂପ ହେଲେହେଁ ଭାଗବତରେ କିଛିଏ ଇତର

ବିଶେଷ ଦେଖାଯାଏ । ବିଷ୍ଣୁପୁରାଣ ପାଠକଲେ ଜଣାଯାଏ ଯେ, ଏକଦା ତାଣ୍ଡବ ନୃତ୍ୟ କାଳରେ ବାଣ ବାଦ୍ୟ ବଜାଇ ମହାଦେବଙ୍କର ସନ୍ତୋଷ ବିଧାନ କରିବାରୁ ସେ ବର ପ୍ରାର୍ଥନା କରିବାକୁ କହିଲେ । ଉତ୍ତରରେ ବାଣ ଯୁଦ୍ଧର ପ୍ରାର୍ଥନା କରିବାରୁ ଶିବ କ୍ରୁଦ୍ଧ ହୋଇ ରଥରୁ ଯେଉଁଦିନ ଧ୍ୱଜ ପତିତ ହେବ, ସେହିଦିନ ତାର ଗର୍ବ ଖର୍ବ ହେବ ବୋଲି କହିଲେ । ଏହି ପ୍ରସଙ୍ଗର ବର୍ଣ୍ଣନାରେ ଶିଶୁଶଙ୍କର ହରିବଂଶର କଥାବସ୍ତୁରେ ଆସ୍ଥା ସ୍ଥାପନ କରି ଭାଗବତକାରଙ୍କ ପଦାଙ୍କ ଅନୁସରଣ ପୂର୍ବକ ଶିବଙ୍କୁ କ୍ରୋଧୀ ରୂପରେ ପ୍ରତିପାଦିତ କରି ଅଛନ୍ତି । ହରିବଂଶକାର ଶିବଙ୍କୁ କ୍ରୋଧୀ ରୂପରେ ଉପସ୍ଥାପିତ ନ କରି ତାଙ୍କ ମୁଖରେ ଯେଉଁ ଭାବି-ଯୁଦ୍ଧର ସୂଚନା କରିଅଛନ୍ତି, ତାହାର ପରିଣାମ ବିଚାର କଲେ କାର୍ଯ୍ୟକାରଣ ପରଂପରାରେ ବୈସାଦୃଶ୍ୟ ଲକ୍ଷିତ ହୁଏ । ଏହି ବୈସାଦୃଶ୍ୟର କ୍ଷାଳନ ନିମନ୍ତେ କବି ଭାଗବତ-କାରଙ୍କ ବର୍ଣ୍ଣନାକୁ ଅକ୍ଷୁଣ୍ଣ ରଖିଅଛନ୍ତି ବୋଲି ଆମ୍ଭମାନଙ୍କର ବିଶ୍ୱାସ । ସେ ଯାହାହେଉ, ଉପସଂହାରରେ କବି କାବ୍ୟର ନାୟିକା ବାଣ-ନନ୍ଦିନୀ ଉଷାର ଅବତାରଣା ମାତ୍ର କରି ଏହି ଛାନ୍ଦଟି ଶେଷ କରିଅଛନ୍ତି ।

**ଦ୍ୱିତୀୟ ଛାନ୍ଦରେ** କବି ଉଷାର ରୂପଗୁଣାଦି ବର୍ଣ୍ଣନାରେ କଳ୍ପନାସୃଷ୍ଟିର ଯେଉଁ ବୈଚିତ୍ର୍ୟ ଦେଖାଇଅଛନ୍ତି ବା କଳା-କୁଶଳତାର ଯେଉଁ ପରିଚୟ ଦେଇଅଛନ୍ତି, ତାହା ପୂର୍ଣ୍ଣ ମାତ୍ରାରେ ତାଙ୍କର ନିଜସ୍ୱ କହିଲେ ଚଳେ । ହରିବଂଶ ଓ ଭାଗବତର ଉଷା ଜଣେ ସାମାନ୍ୟ ନାରୀ, କିନ୍ତୁ ଶିଶୁଶଙ୍କରଙ୍କ ଉଷା ଜଣେ ଅସାମାନ୍ୟ ରୂପବତୀ, ଗୁଣବତୀ ତଥା ବିଦୁଷୀ ନାରୀ । ସ୍ଥୂଳତଃ ଆସନ୍ନଯୌବନର ମଧୁର ସ୍ପର୍ଶରେ ତାହାର ସର୍ବାଙ୍ଗ ସଂନଦ୍ଧ ହୋଇ ପ୍ରସ୍ତ

ମୁହୂର୍ତ୍ତିରେ ସତେ ଯେପରି ରୂପ-ପିପାସୁ ଯୁବକ ସୃଷ୍ଟିରେ ଏ ଏକ ତରଳ ଶୃଙ୍ଖଳା ଆନୟନ କରୁଅଛି । ଅସାମାନ୍ୟ ରୂପ ଲାବଣ୍ୟ ସହ ବହୁ ଦୁର୍ଲ୍ଲଭ ଗୁଣାବଳୀର ମଧୁର ସମାବେଶ କରି କବି ରୂପର କନକ କାନ୍ତିକୁ ଗୁଣରେ ରଞ୍ଜିତ କରିଅଛନ୍ତି ।

**ତୃତୀୟ ଛାନ୍ଦରେ** କବି ବସନ୍ତ ସମାଗମ ସଙ୍ଗେସଙ୍ଗେ ଊଷାର ଯୌବନ-ପ୍ରାପ୍ତି ସୂଚନା କରି ଅଛନ୍ତି । ତରୁଣ ଅରୁଣ କିରଣ ସମ୍ପର୍କରେ ବିକଶିତ କମଳ କଳି ଯେପରି ପ୍ରଭାତ ପ୍ରକୃତିର ସୌନ୍ଦର୍ଯ୍ୟ-ପସରାରେ ନିଜର ମାଧୁରୀ ଟିକକ ମିଶାଇ ଦେଇ ଗୁଞ୍ଜନ ଗୀତର ପ୍ରତୀକ୍ଷାରେ ବ୍ୟାକୁଳ ହୋଇ ଉଠେ, ଠିକ ସେହିପରି ସୁକୁମାରୀ ଊଷା ବାସନ୍ତିକ କୁସୁମ ସମ୍ପଦର ଭରାଗୌରବରେ ଉଚ୍ଛ୍ୱସିତ ଉପବନର ନୟନ-ମନମୋହନ ମାଧୁରୀ ଏବଂ ସୌରଭ ଗୌରବରେ ମନ୍ଥରଗତି ମଳୟାନିଳର ମଧୁରହିଲ୍ଲୋଳରେ ଯୌବନର ବୁଲୁବୁଲି ବ୍ୟାକୁଳତାର ଉତ୍ତର ଦେଇ ମିଳନର ଏକ ଅତୃପ୍ତ ଆକାଙ୍କ୍ଷା ପ୍ରାଣରେ ପୋଷଣ କରିଅଛି । ହରିବଂଶ ଓ ଭାଗବତରେ ଏ ପ୍ରସଙ୍ଗ ସ୍ଥାନ ପାଇ ନାହିଁ । ଉପବନର ପ୍ରାକୃତିକ-ବିଭବ ବର୍ଣ୍ଣନରେ କବି ଯେପରି ସିଦ୍ଧହସ୍ତତା ଦେଖାଇଅଛନ୍ତି, ସେଥିରୁ ଅନୁମିତ ହୁଏ ଯେ, ସେ ଜଣେ ପ୍ରକୃତିର ନୀରବ ପର୍ଯ୍ୟବେକ୍ଷକ ଥିଲେ । ପୁଣି ସେ ବର୍ଣ୍ଣନାମାନ ଏପରି ଜୀବନ୍ତ ଓ ଚିତ୍ତାକର୍ଷକ ହୋଇଅଛି ଯେ ପାଠ କଲେ ସେହି ସକଳ ବାସନ୍ତ-ବିଭବ ପାଠକର ମାନସ-ମୁକୁରରେ ପ୍ରତିଫଳିତ ହୋଇ ଉଠେ । ଯଥା :—

"ପୁଷ୍ପ ମକରନ୍ଦ ଲେଉରେ ମନ୍ଦ ମନ୍ଥର । କମ୍ପାଇଁ ଚେତନ ମନ କଣଲକୁ ନର । ୯ ।
+ + + + +
+ + + + +
ମଧୁପ ମଣ୍ଡଳୀ ଉପରେ ମଧୁର ବାଣୀ । ମଦନ ବିଜୟ କାଳେ ଶଙ୍ଖନାଦ ଜାଣି । ୧୦ ।"

ଏହି ବର୍ଣ୍ଣନା ଅନେକାଂଶରେ ଉତ୍କଳର କବି-କଲକଣ୍ଠ ଜୟଦେବଙ୍କ ବସନ୍ତ ବର୍ଣ୍ଣନର ଅନୁରୂପ । ବସନ୍ତସମାଗମରେ ବୃନ୍ଦାବନର କାନନ-ଲକ୍ଷ୍ମୀ ତାଙ୍କର ଅମର ତୂଲିକାରେ ଯେପରି ସରସ ଓ ପ୍ରାଣସ୍ପର୍ଶୀ ହୋଇ ଉଠିଛି, ଶିଶୁଶଙ୍କରଙ୍କର ଉଦ୍ୟାନଲକ୍ଷ୍ମୀ ତାହାର ଅନୁକରଣରେ ଠିକ ସେହିପରି ସରସ ଓ ପ୍ରାଣସ୍ପର୍ଶୀ ହୋଇ ଉଠିଛି । ଯଥା :—

"ମୃଗମଦ ସୌରଭ ରଭସ ବଶମ୍ବଦ ନବଦଳ ମାଳତମାଳେ
+ + + +
+ + + +
ବିହରତି ହରିରିହ ସରସ ବସନ୍ତେ"

—ଗୀତଗୋବିନ୍ଦ ୧ମ ସର୍ଗ

ବର୍ତ୍ତମାନ ପାଠକଗଣ ଶିଶୁଶଙ୍କର ଓ ଜୟଦେବଙ୍କ ଉଲ୍ଲିଖିତ ଉଦ୍ଧୃତାଂଶ ଦ୍ୱୟର ତୁଳନା କଲେ, ବେଶ ବୁଝିପାରିବେ ଯେ ଉଷା-ଭିଲାଷର କବି ଗୀତଗୋବିନ୍ଦର ବସନ୍ତବର୍ଣ୍ଣନାରେ ନିଜର ମୌଳିକତା ମିଶାଇ ଏକ ଅଭିନବ ଚିତ୍ର ଅଙ୍କନ କରିବାରେ ସୁନ୍ଦର ସିଦ୍ଧହସ୍ତତା ଦେଖାଇ ପାରିଅଛନ୍ତି ।

ଉଦ୍ୟାନର ଏହି କାମୋଦ୍ଦୀପକ ବାସନ୍ତିକ ବିଭବ ମଳୟର ହିଲ୍ଲୋଳ-ନର୍ତ୍ତନରେ ବଣର ଯେଉଁ ବିରହବଂଶୀ ବଜାଉଅଛି, ସେଥିରେ କଣ୍ଠ ମିଶାଇ ଯୌବନର ଉଦ୍ଦାମ ଆବେଗଭରା ସଙ୍ଗୀତଟି ଗାନ କରିବାକୁ ଜଣେ କାମିନୀର ଅଭାବ ଅନୁଭବ କରି କବି ସେଠାରେ ବାଣନନ୍ଦିନୀ ଉଷାର ଅବତାରଣା କରିଅଛନ୍ତି । ଉଦ୍ୟାନ ମଧ୍ୟରେ ଏକ ଜଳାଶୟ ସ୍ୱୀୟ ଉର୍ମ୍ମିଦର୍ପଣରେ ବସନ୍ତ ପ୍ରକୃତିର ଏହି ବିନୋଦଶ୍ରୀକୁ ପ୍ରତିଫଳିତ କରାଇ, ମରାଳ ଓ ଚକ୍ରବାକ ପ୍ରଭୃତି ପକ୍ଷୀମାନଙ୍କର ସୁଲଳିତ କାକଳି-କୋଳାହଳରେ ନିଜର ସ୍ନିଗ୍ଧ-

ସୁଷମାକୁ ଦ୍ୱିଗୁଣିତ କରୁଥାଏ । ତାହାର ଚତ୍ୱରଦେଶସ୍ଥ କନକ ବେଦିକା ଉପରେ ଉଷା ଦଣ୍ଡାୟମାନ ହୋଇ ଅନ୍ତରର ଯୌବନ ବେଦନାରେ ବିଧୁର ବିରହ-ବ୍ୟଥାକୁ ଶତଧିକ୍କାର ପ୍ରଦାନ କରିଅଛି । ଚିତ୍ରଲେଖା ପ୍ରମୁଖ ସହଚରୀବୃନ୍ଦ ପଦ୍ମୀର-ନୀର ସେଚନ ଓ କୁରୁବେଲି-ଶୃମର ବ୍ୟଜନ ପ୍ରଭୃତି ନାନା ଉପଚାରରେ ପ୍ରାଣର ସେ ବିରହ ବ୍ୟଥାକୁ ଶାନ୍ତ କରି ପାରି ନାହାନ୍ତି । ଶେଷରେ ସେ ବିଶ୍ରାମ ଭବନରେ ଆଶ୍ରୟ ନେଇ ବସନ୍ତର ଏହି କାମୋଦ୍ଦୀପକ ବିଭବଠାରୁ ତାହାକୁ ଦୂରରେ ରଖିବା ପାଇଁ ସଖୀମାନଙ୍କୁ ଅନୁରୋଧ କରିଅଛି । ଏହିପରି ଭାବରେ କାମିନୀର କାମାଭିଳାଷକୁ ଫୁଟାଇ କବି ରଜନୀ ଶେଷର ସୂଚନା କରିଅଛନ୍ତି । ନିଶାନ୍ତ ପ୍ରକୃତିର କମନୀୟତା କବିଙ୍କ ତୂଳିକାରେ କିପରି ବାସ୍ତବ ଅଥଚ ସରସ ହୋଇ ଉଠିଛି, ତାହାର ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

"ଶୁଣି ଶେଷେ ଚକ୍ରବାକୀ ଅନନ୍ଦ ଶୁଣି । ଛପିତ ବିକାଶ ହୋଏ ନଳେଣ ନଳିନୀ ।

+ + + + +

ପ୍ରଦୀପ ପାଣ୍ଡୁର ପ୍ରାଚୀ ଧୂସର ଦିଶେ । ନାନା ପକ୍ଷୀ କୋଳାହଳ ଉଚ୍ଚେ ପିକ ଘୋଷେ ।"

ହରିବଂଶ ଓ ଭାଗବତ ଉଭୟଗ୍ରନ୍ଥରେ ବସନ୍ତ ପ୍ରକୃତିର ଏପରି ବିଭବବର୍ଣ୍ଣନା ଦେଖାଯାଏ ନାହିଁ । ଆଖ୍ୟାୟିକାଟିକୁ ଚିତ୍ତାକର୍ଷକ କରିବା ପାଇଁ କବି ଉଷାର ଯୌବନ ପ୍ରାପ୍ତି ସଙ୍ଗେ ସଙ୍ଗେ ବସନ୍ତର ଅବତାରଣା କରିଅଛନ୍ତି । ଅନ୍ୟ ଦିଗରୁ ଦେଖିଲେ ଜଣାଯାଏ ଯେ, ନାୟିକାର ଯୁବତୀସୁଲଭ ପ୍ରେମ ଢଳଢଳ ପ୍ରାଣରେ ପ୍ରଣୟର ମାଦକତା ବୋଳି ଦେବା ପାଇଁ ବା ପ୍ରେମର ସ୍ରୋତଟିଏ ବୁହାଇ ଦେବାପାଇଁ ଋତୁରାଜ ବସନ୍ତ ପରି ନିଖିଳ ଶୋଭାଧାର ସମୟ ଏକାନ୍ତ ଆବଶ୍ୟକ । ଶରତର ନିର୍ମଳ ଚନ୍ଦ୍ରିକା ସୋତରେ ବିଶ୍ୱ ପ୍ରକୃତିର ଶୋଭାକୁ ଉଦ୍-ଭାସିତ କରିବା ନିମିତ୍ତ ବାରିଦ-ବିମୁକ୍ତ ଅସୀମ ଆକାଶ କ୍ଷମ ପରି ?

**ଚତୁର୍ଥ ସ୍ଥାନରେ** କବି ଜଣାନ୍ତି ପ୍ରକୃତିର ମାଧୁରୀକୁ ପ୍ରଭାତ-ପ୍ରକୃତିର ତରୁଣ ଅରୁଣରାଗରେ ମିଶାଇ ଦେଇଅଛନ୍ତି । ବିଯୋଗୀ-ମାନଙ୍କୁ ଦହନ କରିବା ନିମିତ୍ତ ବାଲ ରବିତା କାମାନଳ ଜ୍ୟୋତି ଧାରଣ କରି ପ୍ରାଚୀପର୍ବତର ଶିଖରରେ ଦେଖା ଦେଇଅଛି । ଚନ୍ଦ୍ରିକାର ଶୀତଳ ସ୍ପର୍ଶରେ ଯେଉଁ ଉଷାର ପ୍ରାଣ ଜଳି ପୋଡ଼ି ଯାଉଥିଲା, ସେ ଯେ ବର୍ତ୍ତମାନ ସୂର୍ଯ୍ୟଙ୍କର ପ୍ରଚଣ୍ଡକିରଣ କିପରି ସହିବ, ଏହି ଚିନ୍ତାରେ କବିଙ୍କର ପ୍ରାଣ ଆନ୍ଦୋଳିତ ହୋଇଅଛି । ବିରହବେଦନାର ପୂର୍ବ ଅନୁଭୂତି ନ ଥିବାରୁ ସେ କାମର କଶାଘାତରେ ଜଡ଼ ହୋଇ ଯାଇଅଛି । ବିଜନରେ ବସି ମିଳନ ପାଇଁ ଅନୁଶୋଚନାହିଁ ତାହାର କାର୍ଯ୍ୟ ହେଲା । ଦିନ ପରେ ଦିନ ଅତୀତରେ ମିଶି କ୍ରମେ ବସନ୍ତ ଗ୍ରୀଷ୍ମରେ ପରିଣତ ହେଲା । ପ୍ରଚଣ୍ଡମାର୍ତ୍ତଣ୍ଡ କିରଣରେ ସନ୍ତପ୍ତ ହୋଇ ବନଜନ୍ତୁ ଗଣ ଘଞ୍ଚକୁଞ୍ଜକାନନରେ ଆଶ୍ରୟ ନେଲେ । ସରସୀ ସଲିଳ ଆତପତାପରେ ଶୁଷ୍କ ହେବା ସଙ୍ଗେ ସଙ୍ଗେ ବିରହୀମାନଙ୍କର ହୃଦୟ ମାର-ପୀଡ଼ାରେ ଶୁଷ୍କ ହେବାକୁ ଲାଗିଲା । ଗିରିଶିଖରରେ ଦାବାନଳର ବିଳାସ ଦେଖି ମନେହେଲା, ଯେତେ ଯେପରି କାମାନଳରେ ବିରହୀ ମାନଙ୍କର ହୃଦୟ ପୋଡ଼ି ଯାଉଅଛି । ଏ ସକଳର ଦର୍ଶନରେ ଉଷାର ବିରହ-ବ୍ୟଥା ଅନୁଦିନ ବର୍ଦ୍ଧିତ ହେବାକୁ ଲାଗିଲା । ଦିନେ ସେ ଉପବନର ସରସୀତଟରେ ମାନସ ବିନୋଦନାର୍ଥ ଉପନୀତ ହୋଇ ଶିବପାର୍ବତୀଙ୍କର ଜଳବିହାର ଦର୍ଶନ କରିବାକୁ ପାଇଲା । ଫଳରେ ତାହାର କାମସନ୍ତାପ ଶାନ୍ତ ନ ହୋଇ ଉତ୍ତରୋତ୍ତର ବର୍ଦ୍ଧିତହେବାକୁ ଲାଗିଲା ଏବଂ ନବଯୌବନରେ ଦାରୁଣ ବିରହ ବେଦନା ଭୋଗ କରିବା ହେତୁ ନାରୀଜନସୁଲଭ ଗୋଟାଏ ଅନାସ୍ଥାଭାବ ପ୍ରାଣରେ ଜାଗରିତ ହେଲା । କାମାତୁରା ଯୁବତୀର ଏହି ମନୋଗତ ଭାବ ତାହାର

ହାବଭାବରୁ ଅବଗତ ହୋଇ ପାର୍ବତୀ କହିଲେ, ବୈଶାଖମାସର ଶୁକ୍ଳ ତ୍ରୟୋଦଶୀ ରଜନୀରେ ସ୍ୱପ୍ନରେ ତାହାର କାନ୍ତସଙ୍ଗମ ସଂଘଟିତ ହେବ । ଦେବୀଙ୍କର ଏହି ଅଯାଚିତ ଅନୁଗ୍ରହରେ ସେ ଯଥାସମୟରେ ଏବଂ ଯଥାବିହିତ ଅବସ୍ଥାରେ କାମନନ୍ଦନ ଅନିରୁଦ୍ଧଙ୍କ ସହ ସ୍ୱପ୍ନରେ ସଙ୍ଗମ ସୁଖ ଅନୁଭବ କଲା ସତ, କିନ୍ତୁ ସୁପ୍ତିର ସେ କ୍ଷଣିକ-ସୁଖ ଅତି ଅଳ୍ପକାଳ ମଧ୍ୟରେ ଜାଗରଣରେ ଲୀନ ହୋଇଗଲା । ଉଷାଭିଳାଷର ଏହି ଅଂଶଟି ହରିବଂଶର ଅନୁରୂପ ହେଲେହେଁ ଅପେକ୍ଷାକୃତ ଅଧିକ ସରସ ଓ ଜୀବନ୍ତ ହୋଇଅଛି ଏବଂ ଶୁକ୍ଳଦ୍ୱାଦଶୀ ପରିବର୍ତ୍ତରେ ଶୁକ୍ଳ ତ୍ରୟୋଦଶୀ ବର୍ଣ୍ଣିତ ହୋଇଅଛି । ଭାଗବତରେ ଓ ସାରଳାଦାସଙ୍କ ମହାଭାରତରେ ପାର୍ବତୀଙ୍କର ଏହି ବରଦାନ ପ୍ରସଙ୍ଗ ଆଦୌ ବର୍ଣ୍ଣିତ ହୋଇ ନାହିଁ ।

**ପଞ୍ଚମ ଛାନ୍ଦରେ** କବି ସେହି ଜାଗରଣ-ଲୀନ ସୁଖ-ସ୍ମୃତିର ଉଦ୍‌ବୋଧନ କରି ଉଷାପ୍ରାଣର ବିରହ-ଆକୁଳତାକୁ ବିଳାପରେ ପ୍ରକାଶ କରିଅଛନ୍ତି । ଯେଉଁ ଗୀତ ବା ଭଙ୍ଗୀର ଆଶ୍ରୟରେ ଉଷାର ବିରହ-ବେଦନା ପ୍ରକଟିତ ହୋଇଅଛି, ତାହା ହରିବଂଶ ବା ଭାଗବତରେ ନାହିଁ । ସେଥିରେ କବିଙ୍କର ମୌଳିକ ଭାବ-ପ୍ରବଣତା ଏବଂ ବ୍ୟକ୍ତିଗତ ଜୀବନର ଅନୁଭୂତି ଜ୍ୱଳନ୍ତ ବିଗ୍ରହ ଧାରଣ କରି ଫୁଟି ଉଠିଅଛି ଓ ତାହାର ଛାୟା ପରବର୍ତ୍ତୀଯୁଗର କବିମାନଙ୍କ କୃତିରେ ଏପରି କି ଭଞ୍ଜକବିଙ୍କ ଗ୍ରନ୍ଥମାନଙ୍କରେ ମଧ୍ୟ ପ୍ରଭାବ ବିସ୍ତାର କରିଥିବାର ଦେଖାଯାଏ । ଯଥା :—

"ପଲଙ୍କ ତେଜିଣ ଉଠିଲି ସ୍ୱପ୍ନଶୀ ସ୍ୱପନ ସନ୍ଦେହ ପାଇଣ
ଅହା ପ୍ରାଣନାଥ! କେଣେ ଗଲୁ ବୋଲି ଉଚ୍ଚସ୍ୱରେ କରେ ଡାକୁଣ
ଦଇବ! ଦେଖାଇ ନଥି ହରି ନେଲୁ
ଶିଶୁକୁମାରୀ ମୁଁ କିଛି ନ ଜାଣଇ କପାଇଁ ମୋତେ ଏହା କଲୁ । ୧ ।"

ଏହି ବର୍ଣ୍ଣନା ଭଙ୍ଗୀର ଏକ ଅନାବିଲ ସ୍ୱଚ୍ଛ ପ୍ରତିବିମ୍ବ ଭଞ୍ଜକବିଙ୍କ ଲାବଣ୍ୟବତୀ କାବ୍ୟର ଦ୍ୱାଦଶ ଛାନ୍ଦରେ ଦେଖାଯାଏ । ଯଥା :—

"ଚେତ ଚଉସ ଗ୍ରହିଲ ନଶି ନାଶେ ପାଶେ ନାହିଁ ଦବ୍ୟ ଚିହ୍ନଣ
ମାଉ ଛତେ ହାଥ ନାଥ ନାଥ ବୋଲି ଅତି ଉଚ୍ଚେ କଲା କାହ୍ନଣ
ଶୋକେ ଅଧୀରେ । ଚେତନା ହୃତ ସେ ବଧୂରେ
ଶେଯ ଲେହଣ୍ଡାଇ କବରୀ ଫିଟାଇ କର ଉର ଲୁଚ-ସନ୍ଧରେ । ୨ ।"

ଉଭୟ ଉଦ୍ଧୃତାଂଶର ତୁଳନା କଲେ କେବଳ ଯେ ବର୍ଣ୍ଣନା-ଭଙ୍ଗୀର ସାମ୍ୟ ଲକ୍ଷିତ ହୁଏ ତାହା ନୁହେଁ, ପରନ୍ତୁ ଅନେକ ସ୍ଥାନରେ ଶବ୍ଦସାମ୍ୟ ମଧ୍ୟ ପାଠକର ଆଖିରେ ପଡ଼େ । ଲାବଣ୍ୟବତୀର କଥା ଭାଗରେ ଉଷାଭିଲାଷର ଛାୟା ମଧ୍ୟ ଅନେକ ପରିମାଣରେ ପତିତ ହୋଇଅଛି ଏବଂ ଏହି ଦ୍ୱାଦଶ ଛାନ୍ଦରେ ସେହି ଛାୟାର ବିକାଶ ଅତି ଅଧିକ ଦେଖିବାକୁ ମିଳେ । ତେଣୁ ମନେହୁଏ ଯେ, ଉଷାଭିଲାଷ ଭଞ୍ଜକବିଙ୍କର ଅତି ପ୍ରିୟ ପାଠ୍ୟ ଗ୍ରନ୍ଥ ଥିଲା ।

ସେ ଯାହାହେଉ, ପ୍ରିୟ-ବିରହରେ ବିଧୁରା ଉଷାକୁ ଶାନ୍ତ କରିବା ପାଇଁ କବି ଏହାପରେ ସଖୀ ଚିତ୍ରଲେଖାର ମୁଖରେ ସାନ୍ତ୍ୱନା ଦେଇଅଛନ୍ତି । ସେ ସାନ୍ତ୍ୱନା ଦାନର ଭଙ୍ଗୀ ମଧ୍ୟ କବିଙ୍କର ନିଜସ୍ୱ ଏବଂ ହରିବଂଶ ଓ ଭାଗବତର ବର୍ଣ୍ଣନାଠାରୁ ଅତି ଉଚ୍ଚରେ ଆସନ ପାଇବାର ଯୋଗ୍ୟ । ତାହା କେତେ ଚିତ୍ତାକର୍ଷକ ଏବଂ କବିଙ୍କ ମହାନ୍ ପ୍ରତିଭା ଓ ଅସାଧାରଣ ଅଳଙ୍କାର ଜ୍ଞାନର ପରିଚାୟକ, ନିମ୍ନୋଦ୍ଧୃତ ପଦଦ୍ୱୟରୁ ସହଜରେ ଅନୁମାନ କରାଯାଇ ପାରେ :—

"ମୁଖେ ନୀର ସିଞ୍ଚ ଧୀରେ ଧୀରେ ବିଞ୍ଚ ଚିତ୍ରଲେଖା ମୁଖ ବିରସ
ବାନ୍ଧୁ ଚଉବ କେବଣ ବିପରୀତ ବିରହା କଲୁ ମଧୁମାସ ।
ଅଗୋ ସଖୀ ଛ ! ମୋହ-ମେଘ ତୋତେ ରୁନ୍ଧିଲା,
ଲୋଚନ-ନୀର ଛୁଟରେ ବରଷନ୍ତେ କୋକିଳ-ବଚନ ବାଧିଲା । ୭ ।

ମଳିନ ଅଧର କମ୍ବୁର ଅକାର କଂପିତ-ଭୂତ ବେଙ୍କଟୀ
ଶୋକ-ସାଗରେ ମନ-ନଉ ମିଶିଲ ଚେତନା ଚଞ୍ଚଳ ଚକ୍ରିତ ।
ଅଗୋ ସଖୀତ! କହ-ମଧୁର ମୃଦୁରସ ।
ସଚେତ ହୋଇ ଶରତ-ଚନ୍ଦ୍ରାନନା ବଳ ସଂକୋଚେ ହସ ହସ । ୨ ।”

ଉଷା ବିଳାପର କାରଣ ପ୍ରକାଶ କରନ୍ତେ ଚିତ୍ରଲେଖା ସ୍ୱପ୍ନଦୃଷ୍ଟ ପୁରୁଷର କୁଳଶୀଳ ଓ ଗୋତ୍ରାଦି ଜ୍ଞାତ ହେବା ନିମିତ୍ତ ତ୍ରିଭୁବନର ଚିତ୍ର ଅଙ୍କନ କରି ତାହା ନିକଟରେ ଉପସ୍ଥାପିତ କଲା । ଚିତ୍ରଗୁଡ଼ିକ ସତୃଷ୍ଣ ନୟନରେ ପର୍ଯ୍ୟବେକ୍ଷଣ କରି ଶେଷରେ ଉଷା ଯେତେବେଳେ କାମ-ନନ୍ଦନ ଅନିରୁଦ୍ଧଙ୍କୁ ଦେଖିବାକୁ ପାଇଲା, ସେତେବେଳେ ତାହାର ଯେଉଁ ଆଙ୍ଗିକ ବିକାରମାନଙ୍କର ଉଲ୍ଲେଖ କବି କରିଅଛନ୍ତି, ସେଥିରୁ ସହଜରେ ଅନୁମିତ ହୁଏ ଯେ ସେ ମାନବ ଚରିତ୍ର ବିଶ୍ଳେଷଣ କରି ଦେଖିବାରେ ଅତ୍ୟନ୍ତ ପଟୁ ଥିଲେ । ଯେଉଁ ପ୍ରିୟତମର ଅଦର୍ଶନରେ ପ୍ରାଣ ଚଞ୍ଚଳ ହୋଇ ଉଠୁଥିଲା, ଚିତ୍ରରେ ତାହାର ଦର୍ଶନଲାଭ କରି ଉଷାର ପ୍ରାଣରେ ସେ ଚଞ୍ଚଳତା ପରିବର୍ତ୍ତିରେ ଗୋଟାଏ ଅଧୀର ଆନନ୍ଦର ଧାରା ଖେଳି ଯାଇଛି ସତ, କିନ୍ତୁ ଉଚ୍ଛୃଙ୍ଖଳତାରେ ତାହା କଳୁଷିତ ନ ହୋଇ ଲଜ୍ଜାର ଆବରଣ ତଳେ ଆତ୍ମ-ଗୋପନ କରିଅଛି । ଗଣ୍ଡଯୁଗଳ ପୁଲକରେ ମୁକୁଳିତ ହୋଇ-ଗଲେହେଁ ସଙ୍ଗେ ସଙ୍ଗେ କମ୍ବୁ-କଣ୍ଠରେ ସ୍ୱେଦବିନ୍ଦୁ ଦେଖା ଦେଇଅଛି । ବଦନ ମଣ୍ଡଳ ପ୍ରେମରେ ବିକଶିତ ହୋଇ ଉଠିଲେହେଁ ପୀନ ପୟୋଧରଯୁଗ ସ୍ପନ୍ଦିତ ହୋଇଅଛି । ନୟନ ଯୁଗଳ ସେ ଚିତ୍ରପଟକୁ ସବୁବେଳେ ଦେଖିବାକୁ ଇଚ୍ଛା କରୁଥିଲେହେଁ ଲଜ୍ଜା ତାହାକୁ ଅଧୋମୁଖ କରି ଦେଇଛି । ତଥାପି ପରସ୍ପରର ବିପରୀତ ଏହି ସକଳ ହାବଭାବର ବହିରାବରଣ ଭେଦ କରି ମିଳନର ଗୋପନ-ବିଳାସ ଫୁଟି ଉଠିବାକୁ ଯଥେଷ୍ଟ ଅବସର ପାଇଅଛି । ସ୍ଥୂଳତଃ କବିଙ୍କ

ଅମର-ତୂଳିକା ପ୍ରେମିକା ପ୍ରାଣର ପ୍ରେମକୁ ଯେଉଁ ଭାବରେ ପରିସ୍ଫୁଟ କରିବାକୁ ପ୍ରୟାସ କରିଛନ୍ତି ତାହା ଯେ ଉନ୍ନତ କଳା-କୁଶଳତାର ପରିଚାୟକ, ଏଥିରେ କୌଣସି ସନ୍ଦେହ ନାହିଁ ।

ହରିବଂଶରେ ଏହି ପ୍ରସଙ୍ଗରେ ଦୁଇଟି ଚିତ୍ରଲେଖାଙ୍କର ନାମ ଦେଖିବାକୁ ମିଳେ । ପ୍ରଥମଟି ମନ୍ତ୍ରୀ କୁମ୍ଭାଣ୍ଡ କନ୍ୟା ଚିତ୍ରଲେଖା ଏବଂ ଦ୍ୱିତୀୟଟି ଅପ୍‌ସରା ଚିତ୍ରଲେଖା । ମନ୍ତ୍ରିତନୟା ଚିତ୍ରଲେଖା ଉଷାର ସହଚରୀ ଏବଂ ସୁଖ ଦୁଃଖର ଅଂଶଭାଗିନୀ, କିନ୍ତୁ ଅପ୍‌ସରା ଚିତ୍ରଲେଖା ସହଚରୀ ନୁହେଁ, ପରନ୍ତୁ ସେ ଯୋଗବିଦ୍ୟାବିଶାରଦା ଏବଂ ଚିତ୍ର ବିଦ୍ୟାରେ ନିପୁଣା । ତ୍ରିଭୁବନର ଚିତ୍ରପଟ ଅଙ୍କନ କରି ଉଷା ସମୀପରେ ଉପସ୍ଥାପିତ କରିବାପାଇଁ ଏବଂ ଯୋଗିନୀ ବିଦ୍ୟାବଳରେ ଦ୍ୱାରିକାରୁ ଅନିରୁଦ୍ଧଙ୍କୁ ଆନୟନ କରିବା ପାଇଁ ହରିବଂଶରେ ତାହାର ଅବତାରଣା କରାଯାଇଅଛି । ଶିଶୁଶଙ୍କର କିନ୍ତୁ ଏ ସକଳ କାର୍ଯ୍ୟ ସହଚରୀ ଚିତ୍ରଲେଖା ଉପରେ ଅର୍ପଣ କରି ଭାଗବତକାରଙ୍କ ପଦାଙ୍କ ଅନୁସରଣ କରିଅଛନ୍ତି । ତେଣୁ ହରିବଂଶକାର ଅପ୍‌ସରା ଚିତ୍ରଲେଖାର ଚରିତ୍ରରେ ଯେଉଁ ସକଳ ଅମାନୁଷିକ ଦୈବୀଶକ୍ତିର ଆରୋପ କରି କାର୍ଯ୍ୟୋଦ୍ଧାର କରାଇ ଅଛନ୍ତି, ଶିଶୁଶଙ୍କର ଭାଗବତର କଥାଭାଗ ଗ୍ରହଣ କରିଥିଲେହେଁ ଠିକ୍ ସେହି ସକଳ ଗୁଣାବଳି ସହଚରୀ ଚିତ୍ରଲେଖାର ଚରିତ୍ରରେ ଫୁଟାଇ ଦୁଇଜଣର କାର୍ଯ୍ୟକୁ ଜଣକ-ଦ୍ୱାରା କରାଇ ଅଛନ୍ତି । ଏପରି କରିବାଦ୍ୱାରା କାର୍ଯ୍ୟାନ୍ତର ଆଶୁସମ୍ପାଦନ ସମ୍ଭବପର ହୋଇଅଛି ଏବଂ ଚିତ୍ରଲେଖାର ସଖୀପ୍ରୀତି ସୁଚାରୁରୂପେ ପ୍ରକଟିତ ହୋଇଅଛି । ଅନ୍ୟଦିଗରୁ ଦେଖିଲେ, ଏହି ଗୋପନ ପ୍ରଣୟ ବ୍ୟାପାରର ସୂତ୍ରଧାରିତ୍ୱ ଅନ୍ତରଙ୍ଗ ସଖୀ ହସ୍ତରେ ଅର୍ପଣ କରି କବି ସ୍ୱୀୟ ଚରିତ୍ର କୁଶଳତାରେ ସୁନ୍ଦର ପରିଚୟ ଦେଇଅଛନ୍ତି ।

**ଷଷ୍ଠ ଛାନ୍ଦରେ** କବି ଯଦୁକୁଳତିଳକ କୃଷ୍ଣଙ୍କ ଗୁଣାବଳୀର ବର୍ଣ୍ଣନ କରି ଊଷାର ଅନୁରୋଧରେ ଚିତ୍ରଲେଖାଙ୍କୁ ଦ୍ୱାରାବତୀ ଅଭି-ମୁଖରେ ପଠାଇ ଅଛନ୍ତି । ସାଗର-ବେଳା-ବଳୟିତ ଦ୍ୱାରକାରେ ଅଜ୍ଞେ-ଶରେ ପ୍ରବେଶ କରିବା ଚିତ୍ରଲେଖା ଭଳି ସାମାନ୍ୟ ଜଣେ ଯୋଗିନୀ ପକ୍ଷରେ ଅସମ୍ଭବ । ତେଣୁ ତାହାର ଅପ୍ରତିହତ ଗତି ମର୍ତ୍ତ୍ୟବୈକୁଣ୍ଠ ଦ୍ୱାରକାପୁର ପ୍ରବେଶରେ କବି ପ୍ରତିହତ କରି ଦେଇଅଛନ୍ତି ଏବଂ ମହର୍ଷି ନାରଦଙ୍କର ଅବତାରଣା କରି ମନ୍ତ୍ର ବା ତାମସୀ ବିଦ୍ୟା ତାହାକୁ ପ୍ରଦାନ କରି ଅଛନ୍ତି । କାରଣ ବୈଷ୍ଣବୀ ବିଦ୍ୟା ନିକଟରେ ଯୋଗିନୀ ବିଦ୍ୟାର କୂଟ କପଟ ତିଷ୍ଠି ପାରେ ନାହିଁ । ତେଣୁ ବୈଷ୍ଣବଶିରୋମଣି ନାରଦଙ୍କ ସହାୟତା ବା ତାମସୀ ବିଦ୍ୟା ପ୍ରଦାନ କାର୍ଯ୍ୟୋଦ୍ଧାର ପକ୍ଷେ ଏକାନ୍ତ ଆବଶ୍ୟକ ବୋଲି ସେ ମନେ କରିଅଛନ୍ତି । ମହର୍ଷିଙ୍କ ପ୍ରଦତ୍ତ ବିଦ୍ୟା ପ୍ରଭାବରେ ଚିତ୍ରଲେଖା ସକଳ ବାଧାବିଘ୍ନ ଅତିକ୍ରମ କରି ଦ୍ୱାରକାରେ ପ୍ରବେଶ କରନ୍ତି ଏବଂ ସ୍ୱପ୍ନ ଦର୍ଶନାବଧି ଅନିରୁଦ୍ଧ ଯେ ଊଷାଗତ ପ୍ରାଣ ହୋଇ ବିରହବ୍ୟଥାରେ ଆକୁଳ ହେଉଅଛନ୍ତି, ଏହା ସ୍ପଷ୍ଟ ଦେଖି ପାରନ୍ତି । ଆଉ କାଳ ବିଳମ୍ବ ନ କରି ମନ୍ତ୍ରବଳରେ ଅନିରୁଦ୍ଧର ପଲଙ୍କକୁ ଶିରରେ ଧରି ବାସର-ଶେଷ ବେଳକୁ ସେ ଶୋଣିତପୁରର ଊଷାମେଢ଼ରେ ଉପସ୍ଥିତ ହୋଇଅଛନ୍ତି । ଅନ୍ତଃପୁରରେ ଊଷା ଯେଉଁ ଗୃହକରେ ବାସକରେ, ତାହାର ନାମ ଊଷାମେଢ଼ । ସେଠାରେ ପ୍ରେମିକ ପ୍ରେମିକା ଉଭୟେ ପରସ୍ପରର ଦର୍ଶନ ଲାଭ କରି ଅପାର ଆନନ୍ଦ ଅନୁଭବ କଲେ । ଏହିଠାରେ ନାରଦଙ୍କ ପ୍ରଦତ୍ତ ତାମସୀ ବିଦ୍ୟା ବା ମନ୍ତ୍ର ପ୍ରଭାବରେ କବି ଯେପରି ଅନିରୁଦ୍ଧଙ୍କୁ ଶୋଣିତପୁରକୁ ଆଣାଇ ଅଛନ୍ତି, ପରବର୍ତ୍ତୀ କାଳରେ ତାହାରି ଅନୁକରଣରେ ଉପେନ୍ଦ୍ରଭଞ୍ଜଙ୍କ ଲାବଣ୍ୟ ବତୀ କାବ୍ୟକରେ ଐନ୍ଦ୍ରଜାଲିକର ଅବତାରଣା ଓ ସାମନ୍ତସିଂହାରଙ୍କ

ହରିବଂଶ ଏବଂ ଚିନ୍ତାମଣି ତଥା ରସବତି କାବ୍ୟରେ ଯୋଗମାୟାର ଅବତାରଣା କରାଯାଇଅଛି । ଊଷା-ଉପାଖ୍ୟାନର ଏହି କଥାଭାଗଟି ହରିବଂଶକାର ଓ ଭାଗବତକାରଙ୍କ କଥାଂଶର ମଧ୍ୟର ସଂଯୋଜନାର ଫଳ ହେଲେହେଁ ସାମାନ୍ୟ ଇତର ବିଶେଷ ଦେଖାଯାଏ । ଶିଶୁଶଙ୍କରଙ୍କ ଚିତ୍ରଲେଖା ପଲଙ୍କଶାୟୀ ଅନିରୁଦ୍ଧଙ୍କୁ ପଲଙ୍କସହି ଶୋଣିତପୁରକୁ ଆନୟନ କରିଥିବାର ଜଣାଯାଏ । ହରିବଂଶ କିମ୍ବା ଭାଗବତରେ ପଲଙ୍କ ସହି ଅନିରୁଦ୍ଧଙ୍କୁ ଆଣିବା କଥା ନାହିଁ ।

**ସପ୍ତମ ଛାନ୍ଦରେ** କବି ଉଭୟଙ୍କ ହୃଦୟର ଦର୍ଶନ ଜନିତ ସେହି ଅପାର ଆନନ୍ଦକୁ ପ୍ରଣୟପୂତ ଆଳାପରେ ସ୍ପଷ୍ଟ କରିବାର ଉପକ୍ରମ କରି ଅଛନ୍ତି । ଅନ୍ତରର ପ୍ରିୟତମଙ୍କୁ ଦର୍ଶନ କରି ପ୍ରଥମତଃ ଊଷାର ପ୍ରଣୟ-ସ୍ରୋତ ଉଚ୍ଛଳ ଉଠିଲେହେଁ ପରେ ଲାଜ ଭୟ ଓ ସାତ୍ତ୍ୱିକାଦି ଲକ୍ଷଣ ବା ବିକାର ତାହାର ବହିରଙ୍ଗରେ ଦେଖାଯାଇଅଛି । ସ୍ୱପ୍ନର କ୍ଷଣିକ ମିଳନ ପରେ ଜାଗରଣର ବିରହ-ବେଦନାରେ ଯାହାଙ୍କ ପାଇଁ ପ୍ରାଣ ଅସ୍ଥିର ହୋଇ ଉଠୁଥିଲା, ତାହାଙ୍କୁ ବର୍ତ୍ତମାନ ସଶରୀରରେ ସମ୍ମୁଖରେ ଉପସ୍ଥିତ ଦେଖି ପ୍ରେମିକାର ପ୍ରାଣରେ ଆନନ୍ଦର ଯେଉଁ ଉଚ୍ଛ୍ୱାସ ଖେଳି ଯାଇଥିଲା, ତାହାର ଗୋଟିଏ ଜୀବନ୍ତଛବି କବି ବଡ଼ ଚତୁରତାର ସହିତ ଅଧିକଦୂର ଅଗ୍ରସର ନ ହୋଇ ଅଳ୍ପ କଥାରେ ପ୍ରକାଶ କରିଅଛନ୍ତି :—

"ମାଧବୀ ମଧୁ ସମୟେ ରସାଳ ମଳୟ ବାୟେ ମଧୁପ ମାଳତୀ କଳି ବିକାଶେ ଜାଣି
ରୂପକ ପୟୋଦ ଦେଖି କୁମୁଦ ଶଶୀ ନିରେଖି ରସିକ ସୁଜାଣ ପାଇ ବରତରୁଣୀ
ଶଶିମୁଖୀ ଆନନ୍ଦ ଭେଟେ । ଉପଦେଶ ଅନୁଭବ ସୁଜନ ଯେତେ । ୨ ।"

ପ୍ରିୟତମର ଅଦର୍ଶନରେ ପ୍ରାଣ ଅଧୀର ହେଲେହେଁ ତାହାଙ୍କର ଦର୍ଶନରେ କବି ଊଷାର ପ୍ରାଣକୁ ଗୋଟିଏ ଜଡ଼ତାର ମୋହରେ

ଆଚ୍ଛାଦିତ କରି ଦେଇଅଛନ୍ତି । ବିରହ ବା ବ୍ୟବଧାନ ତାହାର ଯୌବନ-ଯମୁନାରେ ଯେଉଁ ତରଳ ତରଙ୍ଗ ଖେଳାଇ ଦେଇଥିଲା, ମିଳନ ତାହାକୁ ପ୍ରେମର ମଧୁଭରା ମଳୟରେ ଧୀର ଲଳିତ କରିଦେଇ ନିସ୍ତରଙ୍ଗ ସାଗର ପରି ଅନ୍ତରର ଆକୁଳତାକୁ ସେହି ଅନ୍ତରରେ ଘୋଡ଼ାଇ ରଖିଛି । ସ୍ଥୂଳତଃ ବିରହରେ ଯେ ବାବାଦୂକ ପରି ପ୍ରଳାପ କରୁଥିଲା, ମିଳନର ପ୍ରାକ୍‌କାଳରେ ସେ ମୂକ ହୋଇ ଯାଇଅଛି । କବି ଇଚ୍ଛା କରିଥିଲେ ଏଠାରେ ଉଷାକୁ ପ୍ରେମରେ ପାଗଳିନୀ କରି ପାରିଥାନ୍ତେ କିମ୍ବା ପ୍ରଣୟୀର ପ୍ରଣୟ-ପାଶରେ ପକାଇ ହୃଦୟର ବିରହ ଆକୁଳତାକୁ ଦୂର କରିପାରିଥାନ୍ତେ, କିନ୍ତୁ ନାରୀ ହୃଦୟର ଅନ୍ତର୍ଲୀନତା ଏବଂ ଗମ୍ଭୀର ସହନଶୀଳତା ସୁସ୍ପଷ୍ଟରୂପେ ଫୁଟାଇବା ପାଇଁ ସେ ତାହା କରି ନାହାନ୍ତି ।

ଏହିପରି ଭାବରେ ଉଷାର ପରମ-ବିଜଡ଼ିତ ପ୍ରଣୟ-ଜଡ଼ତା ଦେଖାଇ ଆଶୁ-ମିଳନ ଘଟାଇବା ଉଦ୍ଦେଶ୍ୟରେ କବି ଅନିରୁଦ୍ଧଙ୍କ ମୁଖରେ ଗୁଟ୍ଟୁ-ବଚନର ଅବତାରଣା କରି ଅଛନ୍ତି ଏବଂ ତାର ସମସ୍ତ ହୃଦୟଟି ଯେ ଉଷାର ପ୍ରଣୟ-ତର୍ପଣ ପାଇଁ ଉତ୍କଣ୍ଠିତ, ତାହା ସୁନ୍ଦର ଭାବରେ ଦେଖାଇଅଛନ୍ତି । ପ୍ରଣୟୀ ପ୍ରାଣର କାତରତାରେ ଯେ କେବଳ ଏ ଗୁଟ୍ଟୁର ପରିଣତି ତାହା ନୁହେଁ, ପରନ୍ତୁ ପାତ୍ର ଓ ଅବସ୍ଥା ଭେଦରେ ପ୍ରେମର ମହୋଦାର ପ୍ରେରଣା ଓ ସୌନ୍ଦର୍ଯ୍ୟର ପ୍ରକୃଷ୍ଟ ପୂଜାରେ ତାର ପର୍ଯ୍ୟବସାନ ହୋଇଅଛି । ପ୍ରେମିକାର ପ୍ରାଣ ତଳେ ପ୍ରଣୟର ଯେଉଁ ଗୋପନ ସ୍ରୋତଟି ଧୀର ଲଳିତ ଗତିରେ ବହି ଯାଉ ଅଛି, ସେଥିରେ ପ୍ରେମର ଗୋଟିଏ କଳଗୀତ ଖେଳାଇ ଦେବା ଏହାର ଉଦ୍ଦେଶ୍ୟ । ପ୍ରଣୟିନୀର ବିରହ-ଶୀର୍ଣ୍ଣ ଅଧରରେ ପ୍ରଣୟର ଯେଉଁ ଗୋପନ-ଦଳୟ ବାଣୀ ତାହାକୁ ସରସାଇ ଦେଇଛି, ସେଥିରେ

ମଧୁର ହାସ୍ୟର ଏକ ଅକପଟ-ରେଖା ଅଙ୍କନ କରିବା ପାଇଁ ଏହାର ସକଳ ଚେଷ୍ଟା । ପରସ୍ପର ବିଭିନ୍ନ ଦୁଇଟି ହୃଦୟର ନିଭୃତ କୋଣରେ ଯେଉଁ ସ୍ପନ୍ଦନ ଦୁଇଟି ଉଠି ଶେଷରେ ଅନନ୍ତ ଆକାଶର ଏକତାନତାରେ ମିଳିଯାଇ ଦୁଇଟି ପ୍ରାଣକୁ ପ୍ରେମର ନିଗଡ଼ରେ ବଜ୍ରଦୃଢ଼ କରି ବାନ୍ଧି ଦିଏ, ସେହି ସ୍ପନ୍ଦନ ଦୁଇଟିର ଏକତାନତା ଯେଉଁଠାରେ ଯେ ପରିମାଣରେ ବିକଶିତ, ସେହିଠାରେ ସେହି ପରିମାଣରେ କବିତ୍ୱର ଉନ୍ମେଷ ହୋଇଥାଏ । ଭିତରର ଭାବକୁ ବାହାରେ ପରିସ୍ଫୁଟ କରିବାରେହିଁ କବିତ୍ୱର ଚରମ ବିକାଶ ଓ ସେହିଠାରେହିଁ କବିଙ୍କ ତୂଲିକା ଧାରଣ ସାର୍ଥକ ! କବି ଶିଶୁ-ଶଙ୍କର ଏହି ସୃଷ୍ଟି-ରଚନାରେ ଅନୁରାଗୀର ପ୍ରାଣର ପ୍ରାଣକୁ ଖୋଲି ଦେଖାଇ ପାରି ଅଛନ୍ତି । କେବଳ ଯେ ଦେଖାଇ ଅଛନ୍ତି ତାହା ନୁହେଁ, ବରଂ ଦେଖାଇବାରେ ପୂର୍ଣ୍ଣ କୃତକାର୍ଯ୍ୟ ହୋଇଅଛନ୍ତି । ଆଲଙ୍କାରିକ ଭାଷା ସହଯୋଗେ ପ୍ରେମିକ ପ୍ରାଣର ସେହି ବହିର୍ବିକାଶ ଆହୁରି ଅଧିକ ପଲ୍ଲବିତ ହୋଇ ଉଠି ସତେ ଯେପରି କବିଙ୍କ ଅସାଧାରଣ ବଚନ-ଚାତୁରୀ ଓ ପ୍ରତିଭାର ବିଜୟ-ଘୋଷଣା କରୁଅଛି । ଯଥା :—

"କ୍ଷିତ-ହେମଗିରିବର ତଟୁଁ କି ଚନ୍ଦ୍ରମା ଧାରି ନିର୍ମଳ ତ୍ରିବେଣୀ ଧାର ଏ ସୋମରଜ
ତୋ ଛବି ଲଭିବା ପାଇଁ ମାନସ ହ୍ରଦରେ ଯାଇ ଝାସିଲି ପବିତ୍ର ଜଳେ ନିର୍ଭରେ ମଜ୍ଜି
କାମବୃଥ ଗଡ଼ାଇ ନେଲା । ଗଭୀର ନୀରି-ତରଙ୍ଗ ବଧିର କଲା । ୭ ।
ଅବଲମ୍ବି ଭୂମିପାଳ ନନ୍ଦନ ବିମ୍ବ ଯୁଗଳ ଲଭି ମୁଁ ପାଇଲି କାମ-ନଦୀର ପାର
ପୁଣିହିଁ କାମ-ସନ୍ତାପେ ତୋ କୁଚ-ଶଙ୍କର ରୂପେ ଧ୍ୟାନେ ତୋଷିଥିଲି କି ତୋ ପଦଗ୍ରହ
କୃପାଲେଲ ଲୋଚନେ ଗ୍ରହିଁ । ନିଜ ଦାସଜନ ମନ କର ଉଛାହା । ୮ ।"

ଏହି ଗୀତର ସୃଷ୍ଟି ବଚନ ରଚନାରେ ଏହି ଉତ୍କଳର କବି-କୋକିଳ ଜୟଦେବ ମଧ୍ୟ ଦିନେ ଦିବ୍ୟ କଳା-କୁଶଳତା ଦର୍ଶାଇ

ପ୍ରେମମୟୀ କିଶୋରୀଙ୍କ ମାନଭଞ୍ଜନର ମଞ୍ଜୁ ଚିତ୍ରଣ କରିଥିଲେ । ଗୀତଗୋବିନ୍ଦ-ରସିକଗଣ ଅସ୍ମମାନଙ୍କର ଏ ଉକ୍ତିରେ ଏକମତ ହେବେ, ଏହା ନିଃସନ୍ଦେହ । ସେହି ଜୟଦେବଙ୍କ ବର୍ଣ୍ଣନାର ଛାୟା ଉଷାଭିଳାଷର ଗୃହ୍ଯ ରଚନାରେ ସ୍ଥାନେ ସ୍ଥାନେ ଶିଶୁ ଶଙ୍କରଙ୍କୁ ପ୍ରଭାବିତ କରିଥିବାର ଦେଖାଯାଏ । ନିମ୍ନରେ ସେହିପରି କେତୋଟି ବର୍ଣ୍ଣନା ଲିପିବଦ୍ଧ କରାଗଲା :—

"ଉଷିତ ଅଙ୍ଗରେ ଯାର ପାଶେ ଅଛି ପଦ୍ମଗୁରୁ ଅବଳୀ ଶୟନ କ କେ ପାଣ୍ଡୁର ଗଣ୍ଡ
ଯେବେ ଅଛି ଅନୁରାଗ ରତ୍ନ ମୋରେ ଦୃଢ଼ ଦୃଗ ଅପରାଧ ଅନୁରୂପେ କରହ ଦଣ୍ଡ
କରକୁହ ଦଶନ କ୍ଷତ । ଯେଣେ ଶେଷ ଛନ୍ଦ ହୋଏ ହରଷ ଜାତ । ୪ ।
+ + + + +
ଏ ତୋର ସନ୍ଦେଶ ପାଇ ବଳମ୍ବ ମୁଁ କଲି ନାହିଁ ସଫଳ ନୟନେ କ କେ ହେଠବଦନ
ତୁ ମୋର ଦେହ ଜୀବନ ତୁ ମୋର ଭୂଷଣମାନ ତୁ ମୋର ଇନ୍ଦ୍ରି ବିଷୟ ମନ ସଦନ
ତୁ ମୋହୋର ମୁକୁଟ ଶିରେ । ତୁ ମୋର ସୁକୃତ ଫଳ ସୁଖ ସାଗରେ । ୧୬ ।
ତୁ ମୋର ଚନ୍ଦ୍ରବଦନ ତୁ ମୋର ଶିର ବନ୍ଦନ ତୁ ମୋର ମଦନ-ଜଳନିଧି-ତରଣୀ
ତୁ ମୋ ଗଳେ ବନମାଳ ତୁ ମୋହୋର କର୍ଣ୍ଣଫୁଲ ତୁ ମୋର ଭବଭବ ମୁକ୍ତି ସରଣୀ
ତୁ ମୋହୋର ସବୁ ରମଣୀ । ମୁଁ ତୋହୋର ପଦଗୁରୁ କ କେ କ ଗଣି । ୧୭ । "

ଗୀତଗୋବିନ୍ଦକାର କବି ଜୟଦେବ ୧୦ମ ସର୍ଗରେ କିଶୋରୀଙ୍କ ମାନଭଞ୍ଜନ ଉଦ୍ଦେଶ୍ୟରେ ରସିକଚୂଡ଼ାମଣି କୃଷ୍ଣଙ୍କ ମୁଖରେ କହି ଅଛନ୍ତି :—

"ସତ୍ୟମେବାସି ଯଦି ସୁଦତି ମୟି କୋପିନୀ ଦେହି ଖର ନୟନ ଶରଘାତମ୍ ।
ଘଟୟ ଭୁଜ ବନ୍ଧନଂ ଜନୟ ରଦ ଖଣ୍ଡନଂ ଯେନ ବା ଭବତି ସୁଖଜାତମ୍ ॥
ତ୍ୱମସି ମମ ଭୂଷଣଂ ତ୍ୱମସି ମମ ଜୀବନଂ ତ୍ୱମସି ମମ ଭବ ଜଲଧିରତ୍ନମ୍ ।
ଭବତୁ ଭବତୀହ ମୟି ସତତ ମନୁରୋଧିନୀ ତତ୍ର ମମ ହୃଦୟ ମତିଯତ୍ନମ୍ ॥ "

ସୂକ୍ଷ୍ମଦର୍ଶୀ ପାଠକଗଣ ଉଲ୍ଲିଖିତ ଉଦ୍ଧୃତାଂଶର ତୁଳନା କଲେ ଜାଣି ପାରିବେ ଯେ, ଜୟଦେବଙ୍କ ପ୍ରଭାବ ଶିଶୁଶଙ୍କରଙ୍କ ମୌଳିକତାରେ ମିଶ୍ରିତ ହୋଇ ସଂପୂର୍ଣ୍ଣ ଏକ ନୂତନ ଆକାର ଧାରଣ କରିଅଛି ।

ଗ୍ରନ୍ଥବର୍ଣ୍ଣନର ଶେଷରେ ପ୍ରେମିକ ପ୍ରେମିକା ଉଭୟଙ୍କର ମିଳନ ଅବଶ୍ୟମ୍ଭାବୀ ହେଲେହେଁ ଏଠାରେ କବି ତାହା କରି ନାହାନ୍ତି । ବିନା ବିବାହରେ ମିଳନର ସୂତ୍ରପାତ କରିବା ନୀତି-ବିରୁଦ୍ଧ ଏବଂ ସମାଜତତ୍ତ୍ୱଜ୍ଞଗଣ କଦାପି ତାହାର ଅନୁମୋଦନ କରିବେ ନାହିଁ । ତେଣୁ କବି ସତ୍ତ୍ୱତଶ୍ରୀ ଚନ୍ଦ୍ରଲେଖାର ମୁଖରେ ଗାନ୍ଧର୍ବ ବିଧାନ ଅନୁସାରେ ପ୍ରଥମେ ବିବାହ କରି ପରେ ଉଷାଙ୍କୁ ଉପଭୋଗ କରିବାପାଇଁ ଅନିରୁଦ୍ଧଙ୍କୁ ଅନୁରୋଧ କରିଅଛନ୍ତି । ପ୍ରେମହିଁ ପ୍ରେମ, ତାହାର ମର୍ଯ୍ୟାଦା ନାହିଁ, ଶୃଙ୍ଖଳା ନାହିଁ । ତାହାର ଗତି ଅବାରିତ । ପ୍ରେମିକ ପ୍ରେମିକା ଉଭୟଙ୍କର ପରସ୍ପର ଦର୍ଶନରେ ପ୍ରେମର ଯେ ମହାଭାବ ଉଚ୍ଛୁଳି ଉଠିଥିଲା, ତାହାର ଗତି ପଥରେ ବାଧା ଦେବାକୁ ସମର୍ଥ କିଏ ? ଏପରି ଅବସ୍ଥାରେ ଯଦି ନାୟକ ନାୟିକା ଉଭୟେ ସ୍ୱତଃ ଉଦିତ ପ୍ରେମକୁ ନିଗୃହୀତ କରି ସେଥିରେ ରସିକ ହୁଅନ୍ତେ, ତେବେ ପ୍ରେମର ଅଧିରାଜତ୍ୱରେ ବାଧା ଉପସ୍ଥିତ ହୁଅନ୍ତା ଓ ପ୍ରେମମାଧୁର୍ଯ୍ୟ ପ୍ରତିପତ୍ତିରେ ହୃଦୟର ଗତି କୁଣ୍ଠିତ ହୁଅନ୍ତା । ବିଚକ୍ଷଣ କବି ଏହି ଦୃଷ୍ଟିରେ ସହଜ ପ୍ରେମଭାବର ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟ ଫୁଟାଇ ତାହାକୁ ବାସ୍ତବ ଜଗତର ନୀତି ରାଜ୍ୟକୁ ଖସାଇ ଆଣି ଅଛନ୍ତି । ଅନ୍ୟ ଦୃଷ୍ଟିରେ ଦେଖିଲେ, ଉଚ୍ଛୃଙ୍ଖଳ କାମର ଶୃଙ୍ଖଳା ନିମିତ୍ତ ସବିଧାନ ମୋଡ଼ା । ତେଣୁ ଉଭୟ ଦୃଷ୍ଟିରେ କବି ମନ୍ତ୍ରିକନ୍ୟା ପ୍ରେମଲୀଳା-ସଂଯୋଜୟିତ୍ରୀ ଚନ୍ଦ୍ରଲେଖାର ମୁଖରେ ଗାନ୍ଧର୍ବ ବିବାହର ପ୍ରସ୍ତାବନା କରି ସମ୍ପୂର୍ଣ୍ଣ ମର୍ଯ୍ୟାଦା ଅଭିଜ୍ଞତାର ନିଦର୍ଶନ ଦର୍ଶାଇ ଅଛନ୍ତି । ଆର୍ଯ୍ୟ ଅନିରୁଦ୍ଧ ତାହା ଶ୍ରବଣରେ ଅନ୍ତଃସଂରକ୍ଷଣ କରି ଉପଯୁକ୍ତ ଗାନ୍ଧର୍ବ ବିଧାନରେ ଉଷାଙ୍କୁ ଗ୍ରହଣ କରିଥିଲେ । କଥାଭାଗରେ ଏହି ସେଉଁ ବୈଚିତ୍ର୍ୟ କବି ସପ୍ତମ ଛାନ୍ଦରେ ଦର୍ଶାଇ ଅଛନ୍ତି, ହରିବଂଶ ଓ

ଭାଗବତରେ ତାହାର ଏକାନ୍ତ ଅଭାବ ଲକ୍ଷିତ ହୁଏ । ସେମାନେ ଏହି ଉଷା ଉପାଖ୍ୟାନରେ କେବଳ କୃଷ୍ଣଙ୍କର ମହିମା କୀର୍ତ୍ତନ ଓ ବାଣର ପରାଭବ ବର୍ଣ୍ଣନ କରିବାକୁ ଯେତେ ଯେପରି ଲେଖନୀ ଧାରଣ କରିଥିଲେ ଏବଂ ସେହି ଉଦ୍ଦେଶ୍ୟ ସିଦ୍ଧ କରିବାକୁ ଯାଇ ପ୍ରସଙ୍ଗକ୍ରମେ ଉଷା ଓ ଅନିରୁଦ୍ଧଙ୍କର ଅବତାରଣା କରି ସେମାନଙ୍କ ପ୍ରେମର ଗୋଟାଏ ଅସ୍ପଷ୍ଟ ଆଭାସ ମାତ୍ର ପ୍ରଦାନ କରିଅଛନ୍ତି । ଶିଶୁ ଶଙ୍କରଙ୍କ ଉଦ୍ଦେଶ୍ୟ କିନ୍ତୁ ଏତା ନୁହେଁ । ସେ ପ୍ରେମର ପରାକାଷ୍ଠା ଦେଖାଇବା ପାଇଁ ଏବଂ ଚରିତ୍ରକୁ ଲୋକଶିକ୍ଷାର ଉପଯୋଗୀ କରିବା ପାଇଁ ଲେଖନୀ ଧାରଣ କରିଥିଲେ । ପୁରାତନକୁ ନୂତନତାର ବେଶରେ ସଜାଇ ହୃଦୟଗ୍ରାହୀ କରିବାରେ ସେ ନିଜର ସକଳ ଶକ୍ତି ସାମର୍ଥ୍ୟ ପ୍ରୟୋଗ କରି ଅଛନ୍ତି । ତେଣୁ ତାଙ୍କର କଥା-ଚିତ୍ରରେ ଏପରି ବିଚିତ୍ରତାର ସମାବେଶ ସମ୍ଭବପର ହୋଇଅଛି ।

**ଅଷ୍ଟମ ଛାନ୍ଦରେ** ଗାନ୍ଧର୍ବ ବିବାହର ଶେଷରେ କବି ନବ-ଦଂପତୀଙ୍କର ମିଳନ ସୁଖ ଚିତ୍ରିତ କରି ଅଛନ୍ତି । ଉପମା, ଉତ୍ପ୍ରେକ୍ଷା ପ୍ରଭୃତି ଯୋଗେ ସେ ଚିତ୍ରଣ ଏପରି ଚିତ୍ତାକର୍ଷକ ହୋଇଅଛି ଯେ, ତାହା ବର୍ଣ୍ଣନାତୀତ । ବିହାର ବିଳାସର ଶେଷରେ ଉଷାର ଅଲୁଳାୟିତ କୁନ୍ତଳ ଓ ଶ୍ଳଥ ବସନ ଭୂଷଣ ମଧ୍ୟରୁ ମଧ୍ୟ ଗୋଟାଏ ସୌନ୍ଦର୍ଯ୍ୟର ଧାରା ଉଚ୍ଛୁଳି ଉଠୁଥାଏ । ଲୋଚନ ଯୁଗ କୁଞ୍ଚିତ, ଖର ନିଶ୍ୱାସରେ ତନୁ ଘନ ଘନ କଂପିତ, ଆଲିଙ୍ଗନରେ ମୃଦୁ କର ଯୁଗ୍ମ ଶିଥିଳ, ଓଷ୍ଠ ନୀରସ ଓ ଚକ୍ଷୁର ଲୁଳିତ ହୋଇ ଯାଇଥିଲେହେଁ ସେଗୁଡ଼ିକର ଅଯତ୍ନଗ୍ରଥିତ ମାଧୁରୀ ବଡ଼ ପ୍ରାଣସ୍ପର୍ଶୀ ଏବଂ ପ୍ରଣୟୀର ଅନ୍ତରେ ଅନ୍ତରେ ପ୍ରେମର ହିଲ୍ଲୋଳ ଖେଳାଇବାରେ ଯଥେଷ୍ଟ କ୍ଷମ । ଗୀତ-ଗୋବିନ୍ଦର ରାଧା ମଧ୍ୟ ଏହିପରି ଅଯତ୍ନ ବିନ୍ୟସ୍ତ ସୁଷମାରେ ରସିକଚୂଡ଼ାମଣି

ଶ୍ରୀକୃଷ୍ଣଙ୍କ ପ୍ରାଣର ପ୍ରତି ଅଣୁ-ପରମାଣୁ ସ୍ପର୍ଶ କରି ପାରିଅଛନ୍ତି । ଜୟଦେବ ସ୍ଥଳ ବିଶେଷରେ ଲେଖି ଅଛନ୍ତି :—

"ବ୍ୟାଲୋଳଃ କେଶପାଶସ୍ତରଳିତମଳକୈଃ ସ୍ୱେଦଲୋଲୌ କପୋଲୌ
କ୍ଲିଷ୍ଟା ଦଷ୍ଟାଧରଶ୍ରୀଃ କୁଚକଲଶରୁଚା ହାରିତା ହାରଯଷ୍ଟିଃ
କାଞ୍ଚୀ କାଞ୍ଚିଦ୍‌ଗତାଶାଂ ସ୍ତନଜଘନପଦଂ ପାଣିନାଚ୍ଛାଦ୍ୟ ସଦ୍ୟଃ
ପଶ୍ୟନ୍ତୀ ସତ୍ରପଂ ମାଂ ତଦପିବିଲୁଳିତ ସ୍ରଗ୍‌ଧରେୟଂ ଧିନୋତି ।"

ସୁଖାବସାନରେ ଉଷାର ସ୍ଥାନଚ୍ୟୁତ ଅଙ୍ଗାଭରଣମାନ ଅନିରୁଦ୍ଧଙ୍କ ଦ୍ୱାରା କବି ନିଜ ସ୍ୱଭାବ-ସୁଲଭ ଚତୁରତାର ସହିତ ଯଥାସ୍ଥାନରେ ସନ୍ନିବେଶିତ କରିଅଛନ୍ତି । ଗୀତଗୋବିନ୍ଦର କବି ସମ୍ଭୋଗ ଶେଷରେ କୃଷ୍ଣଙ୍କ ଦ୍ୱାରା ରାଧାଙ୍କ ବେଶରଚନା ଯେଉଁ ପ୍ରଣାଳୀରେ କରି ଅଛନ୍ତି, ତାହାର ଏକ ଅନାବିଳ ଅଥଚ ଅସ୍ପଷ୍ଟ ପ୍ରଭାବ ଉଷାର ବେଶ ବିନ୍ୟାସରେ ଦେଖିବାକୁ ମିଳେ । ଶିଶୁଶଙ୍କର ସେହି ଅନାବିଳ ପ୍ରଭାବରେ ନିଜର ମୌଳିକ କଳାକୁଶଳତା ମିଶାଇ ସମାଲୋଚକର ଆଖିରେ ଚମତ୍କାର ଦୁଇଟି ଦିଗ ମୂର୍ତ୍ତି ଭାବରେ ଦେଖାଇ ଅଛନ୍ତି—ଏକ ଦିଗରୁ ଦେଖିଲେ ଗୀତଗୋବିନ୍ଦର ଅସ୍ପଷ୍ଟ ଛାୟା ଏବଂ ଅନ୍ୟଦିଗରୁ ଦେଖିଲେ ମୌଳିକ ପ୍ରତିଭାର ସ୍ନିଗ୍ଧ ବିକାଶ ହିଁ ପାଠକ ବା ସମାଲୋଚକ ଉଭୟଙ୍କ ଦୃଷ୍ଟିରେ ପଡ଼େ । ନିମ୍ନରେ ସେହି ଅସ୍ପଷ୍ଟ ଛାୟା ସହ ମୌଳିକ ପ୍ରତିଭାର ମଧୁର ମିଳନ ପ୍ରଦର୍ଶିତ ହେଲା :—

ଗୀତଗୋବିନ୍ଦରେ ବେଶରଚନା ପାଇଁ କୃଷ୍ଣଙ୍କ ପ୍ରତି ରାଧାଙ୍କ ଅନୁରୋଧ—

"ନୟନ କୁରଙ୍ଗ ତରଙ୍ଗ ବିକାଶ ନିରାସକରେ ଶ୍ରୁତି ମଣ୍ଡଳେ

\+ + + + +

ମଣିରସନା ବସନାଭରଣାନି ଶୁଭାଶୟ ବାସୟ ସୁନ୍ଦରେ" ୧୨ଶ ସର୍ଗ

ତୃଷାର ବେଶ-ବିନ୍ୟାସ ବର୍ଣ୍ଣନା ;—

"ନିଜ ଦୃଷ୍ଟିରେ ଦଣ୍ଡେ ମନ୍ଦ ମନ୍ଦ । ଦରେ ପୋଛଇ ମୁଖ ଅରବିନ୍ଦ । ୩୨ ।

+ + + + +

କରେ କଙ୍କଣ କଣ୍ଠରେ ମୁକୁତା । ଭଲେ ସିନ୍ଦୂର ବିନ୍ଦୁ ଶୁଭ୍ର ଚିତା । ୪୨ ।"

ଇତ୍ୟାଦି ଇତ୍ୟାଦି ।

ଏହି ବର୍ଣ୍ଣନାରେ ଶିଶୁଶଙ୍କର ଯେଉଁ ମୌଳିକତା ଦେଖାଇ ଅଛନ୍ତି, ହରିବଂଶ ଓ ଭାଗବତରେ ତାହା ସ୍ଥାନ ପାଇ ନାହିଁ । ହରିବଂଶ-କାର ଓ ଭାଗବତକାର ଗୋଟିଏ ଗୋଟିଏ ସୁବୃହତ୍ ଉଦ୍ୟାନ-ରଚନାରେ ପାରଗତା ଦେଖାଇ ଅଛନ୍ତି । କିନ୍ତୁ ଉଷାଭିଳାଷକାର ନିଜ ରଚନାପ୍ରବୃତ୍ତି, ସୌନ୍ଦର୍ଯ୍ୟ ଜ୍ଞାନ ଓ କଳାପାଟବ ପ୍ରଭୃତିରେ କମନୀୟ କରି ଏହି ଛବିକୁ ଫୁଟାଇ ଅଛନ୍ତି ।

**ନବମ ଛାନ୍ଦରେ** କବି ପ୍ରେମିକ ପ୍ରେମିକା ଉଭୟଙ୍କ ପ୍ରେମର ଗାଢ଼ତା ପ୍ରତିପାଦନ ଓ ନାନା ହାସ ପରିହାସ ଛଳରେ ସେମାନଙ୍କ ଅତୀତସ୍ମୃତିର ଉଦ୍‌ବୋଧନ କରିଅଛନ୍ତି । ଯେତେବେଳେ ପ୍ରାଣରେ ପ୍ରେମ ଜାଗ୍ରତ ହୁଏ, ସେତେବେଳେ ପ୍ରଣୟିନୀର ପ୍ରତି ଅଙ୍ଗ ଭଙ୍ଗୀରେ ପ୍ରଣୟୀ ବିଶ୍ୱର ପୁଞ୍ଜୀଭୂତ ସୌନ୍ଦର୍ଯ୍ୟର ଗୋଟିଏ ମଧୁର ବିଳାସ ଦେଖେ । ପ୍ରିୟାର ଗମନ ଭଙ୍ଗୀ ନିକଟରେ ମରାଳ ଏବଂ ଗଜର ଗମନଭଙ୍ଗୀ ପରାଜିତ ହୁଏ, ବଚନର ମଧୁରତାରେ କୋକିଳର ପଞ୍ଚମବାଣୀ ଅବହେଳିତ ହୁଏ ଏବଂ ବଦନର ସ୍ନିଗ୍ଧସୁଷମା ସମ୍ମୁଖରେ ଶରଦିନ୍ଦୁର ବିମଳ ମାଧୁରୀ ତୁଚ୍ଛ ବୋଲି ପ୍ରତୀତ ହୁଏ । ସ୍ଥୂଳତଃ ଜଗତରେ ଯାହା କିଛି ସୁନ୍ଦର, ଯାହା କିଛି ମଧୁର, ଯାହା କିଛି ଲଳିତ, ସେ ସମସ୍ତଠାରୁ ବଳି ଏକ ମହତ୍ ସୌନ୍ଦର୍ଯ୍ୟ, ମହତ୍ ମାଧୁରୀ ଓ କମନୀୟ ଲାଳିତ୍ୟ ପ୍ରେମିକାର ହାବ ଭାବ ଓ ବିହାର ବିଳାସରେ ପ୍ରେମିକ ଦେଖିବାକୁ ପାଏ । ଏ ସ୍ଥଳରେ କବି ଶିଶୁଶଙ୍କର ପ୍ରେମିକ ପ୍ରାଣର ଏହି ପ୍ରେମ-ପ୍ରବଣତା

ବର୍ଣ୍ଣନା କରିବାକୁ ଯାଇ ଯଥେଷ୍ଟ ଦକ୍ଷତାର ପରିଚୟ ଦେଇଅଛନ୍ତି । ସୁଖାବସାନରେ ଚନ୍ଦ୍ରକାର ବିଚିତ୍ର ଚନ୍ଦ୍ରାତପତଳେ ମଣିମୟ ପଲଙ୍କ ଉପରେ ବସି ଅନିରୁଦ୍ଧ ପ୍ରିୟାର ଅଧର କୋଣରେ ହାସ୍ୟର ଗୋଟିଏ ରେଖା ଫୁଟାଇବା ପାଇଁ ଅତୀତସ୍ମୃତିର ଉଦ୍‌ବୋଧନ କରିବା ସଙ୍ଗେସଙ୍ଗେ ତାହାର ରୂପଗୁଣର ବର୍ଣ୍ଣନା ଓ ଗ୍ରନ୍ଥରଚନା ଆରମ୍ଭ କରିଅଛନ୍ତି । ସେ ବର୍ଣ୍ଣନାର ପ୍ରତି ପଂକ୍ତିରେ ଉଷାର ରୂପ-ମାଧୁରୀ ସତେ ଯେପରି ଅଦ୍ଭୁତ ଅଧିକତର ଉଜ୍ଜ୍ୱଳ ହୋଇଅଛି । ଆହୁରି ମଧ୍ୟ ତାହା ପ୍ରତି ଅନିରୁଦ୍ଧର ପ୍ରେମ କି ପରିମାଣରେ ଓ କିପରି ଅକୃଷ୍ଟ ହୋଇଥିଲା, ସେ ସମସ୍ତ ତାର ସ୍ପଷ୍ଟ ପରିଚାୟକ । ପ୍ରେୟସୀର ଭ୍ରୂଲତା ଓ କଟାକ୍ଷରେ ମୁଗ୍ଧହୋଇ ଅନିରୁଦ୍ଧ କହୁଅଛନ୍ତି :—

"ମୋ ମନେ ମଣିଲି ଭ୍ରୂଲତା-କୋଦଣ୍ଡ ସନ୍ଧାଣ କଟାକ୍ଷ-ବାଣ
ବସନ୍ତ ସହିତେ ବିଜୟ କଲେ କି ପ୍ରତକ୍ଷେ ଦେବ ମଦନ । ୧୦ ।
\+ \+ \+ \+ \+
\+ \+ \+ \+ \+
ରସାଳ ନବମୁକୁଳ କରକୁଚ ଦେଖି ମୋ ଚଞ୍ଚଳ ମନ
ସର୍ଯାରେ ଗୃହୀଲେ ହୃଦରେ ପଡ଼ିଲି ମୋହ-ବଣିଶ ଲୋଚନ । ୧୭ ।"

ଉଲ୍ଲିଖିତ ଉଦ୍ଧୃତାଂଶରେ ଭ୍ରୂଲତା-କୋଦଣ୍ଡରେ କଟାକ୍ଷ-ବାଣ ଯୋଜନା କରି ମଦନ ବସନ୍ତ ସହିତ ବିଜୟ-ଯାତ୍ରା କରୁଥିବାର ଉତ୍‌ପ୍ରେକ୍ଷାରେ କବି ଉଷାର ପ୍ରତି ଅଙ୍ଗ ପ୍ରତ୍ୟଙ୍ଗରେ ବାସନ୍ତିକ କୁସୁମାବଳୀର ଯେଉଁ ମଧୁର ସମାବେଶ କରିଅଛନ୍ତି, ତାର ପଛରେ ଯେ ଅସାଧାରଣ ପ୍ରତିଭା ଏବଂ ନିରବଚ୍ଛିନ୍ନ ସାଧନାର ଧାରା ଲୁକ୍କାୟିତ, ଏହା କି ପାଠକ କି ସମାଲୋଚକ ଉଭୟେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ । ହରିବଂଶ ଓ ଭାଗବତରେ କେବଳ ଗୋପନ ପ୍ରଣୟର ଉଲ୍ଲେଖ ବ୍ୟତୀତ ଏ ରୀତିର କୌଣସି ବର୍ଣ୍ଣନା ଆଦୌ ସ୍ଥାନ ପାଇ ନାହିଁ । ଏହା ପୂର୍ଣ୍ଣମାତ୍ରାରେ କବିଙ୍କର ନିଜସ୍ୱ । ବନ୍ଧୁଭର ଏହି ପ୍ରଣୟାପ୍ଳୁତ ବଚନ ରଚନା ଏବଂ ପ୍ରୀତିଗୋଲା

ଶୃଙ୍ଗାରରେ ଉଷାର ଲଳିତ ଅଧର କୋଣରେ ମୃଦୁହାସ୍ୟର ଏକ ମଧୁର ଛନ୍ଦନ ବିଦ୍ୟୁତ୍ ସମ ଖେଳିଗଲା । ଏଠାରେ ମୁଗ୍ଧା ଯୁବତୀର ପ୍ରେମକୁ ରଜନୀ ସଙ୍ଗେ ତୁଳନା କରି କବି ପ୍ରାରମ୍ଭ-ସମ୍ଭାଷଣର ଲଜ୍ଜାସଙ୍କୋଚକୁ ପ୍ରେମିକର ଶୃଙ୍ଗାର ଚଟୁଳ ବଚନରେ ଅପସାରିତ କରିଅଛନ୍ତି ଏବଂ ପ୍ରେମିକ ପ୍ରେମିକା ଉଭୟଙ୍କୁ ପ୍ରେମର ଅଗାଧ ସମୁଦ୍ରକୁ ନେଇ ଯାଇ ସେଠାରେ ପ୍ରେମର ବିଜୟ ଘୋଷଣା କରିଅଛନ୍ତି । ଏହାପରେ ରଜନୀ କ୍ରମେ ପ୍ରଭାତରେ ପରିଣତ ହୋଇ ଆସିଛି । ପ୍ରଭାତର ନିସର୍ଗ ସୁନ୍ଦର ବର୍ଣ୍ଣନାରେ କବି ଏଠାରେ ନିଜର ସିଦ୍ଧହସ୍ତତା ଦେଖାଇ ଅଳ୍ପ-କଥାରେ ନିଶାନ୍ତ ପ୍ରକୃତିର ଅବାହନ କରିଅଛନ୍ତି । ଉଷାର ସଙ୍କେତ ପାଇ ପ୍ରେମିକ ପ୍ରେମିକା ଉଭୟେ ନିତ୍ୟ ନୈମିତ୍ତିକ କର୍ମ ସମାପନାନ୍ତେ ପୁନଶ୍ଚ ବିବିଧ ବିଳାସ-ତରଙ୍ଗରେ ଭାସିବାକୁ ଆରମ୍ଭ କରି ଅଛନ୍ତି ଏବଂ ସେମାନଙ୍କର ଏହି ଗୋପନ ପ୍ରଣୟର ସନ୍ଧାନ ଯେପରି କେହି ପାଇ ନ ପାରନ୍ତି, ସେଥିପାଇଁ ଯଥେଷ୍ଟ ସତର୍କତା ଅବଲମ୍ବନ କରିବାକୁ ସହଚରୀ ଚିତ୍ରଲେଖାକୁ ସାନୁନୟ ଅନୁରୋଧ କରିଅଛନ୍ତି ।

**ଦଶମ ଛାନ୍ଦରେ** କବି ବର୍ଷା ଓ ଶରତ୍ ଋତୁ ବର୍ଣ୍ଣନା କରି ପ୍ରେମିକ ପ୍ରେମିକାଙ୍କର ସେହି ଗୋପନ ପ୍ରଣୟକୁ ନାନାଦି ହାସ ପରିହାସ ଓ ଶୃଙ୍ଗାରବଚନରେ ଆହୁରି ଅଧିକତର ଉଜ୍ଜୀବିତ କରିଅଛନ୍ତି ଏବଂ ଶେଷରେ ପଶାଖେଳର ଅବତାରଣା ମଧ୍ୟ କରିଅଛନ୍ତି । ରଚନା ନୈପୁଣ୍ୟ ଦେଖାଇବା ପାଇଁ ବା କଳାକୌଶଳର ମହତ୍ତ୍ୱ ପରିସ୍ଫୁଟ କରିବାପାଇଁ ଏ ପ୍ରକୃତି ବର୍ଣ୍ଣନାର ଅବତାରଣା ହୋଇ ନାହିଁ । ପ୍ରେମିକ ପ୍ରାଣର ପ୍ରେମ କେତେଦୂର ଗଭୀର ଏବଂ ପ୍ରଣୟିନୀର ସୁଖ-ସମ୍ପାଦନରେ କେତେଦୂର ବ୍ୟଗ୍ର, କେବଳ

ତାହା ଦେଖାଇବାପାଇଁ କବ ଏ ଋତୁବର୍ଣ୍ଣନାକୁ ନମିତ୍ତ କରେ ଗ୍ରହଣ କରିଅଛନ୍ତି । ବର୍ଷା ପ୍ରକୃତର କଦମ୍ବ-ବକାଶ ଚୁମ୍ବନ କାଳରେ ଉଷାର ପୁଲକତ ତବୁକ-ଶୋଭା ଧାରଣ କରିଅଛି । ମୂର୍ଖ ଗଜର ଭୂମିଗନ୍ଧ ଆଘ୍ରାଣରେ ମନେହୁଏ, ଯେପରି କ ଉଷାର ଶ୍ରୀମୁଖ-ସୌରଭର ଅନୁସନ୍ଧାନରେ ସେ ଇତସ୍ତତଃ ଭ୍ରମଣ କରୁଅଛି । ଶରତର ସମାଗମରେ ବିଶ୍ୱ ପ୍ରକୃତି ନାନାବଧ କୁସୁମ-ସମ୍ପଦରେ ଯେତେବେଳେ ବଭବଶାଳନୀ ହୋଇ ଉଠିଛି, ସେତେବେଳେ ଭ୍ରମରକୁଳ ମଧୁଗନ୍ଧରେ ଲୁବ୍ଧ ନ ହୋଇ ସତେ ଯେପରି ଉଷାର ଶ୍ରୀମୁଖ-ସୌରଭରେ ଅନ୍ଧ ହୋଇ ଯାଇଅଛନ୍ତି ଏବଂ ତାହା ଦେଖି ଲଜ୍ଜା ଓ ଅପମାନରେ ପଙ୍କଜ ସତେ ଯେପରି ମୁଦ୍ରିତ ହୋଇ ଯାଇଅଛି । ମରାଳ ସତେ ଯେପରି ଉଷାର ନୂପୁର ନାଦ ସହ ପ୍ରତଯୋଗିତା କରି ପରାଜତ ହେବାରୁ ବଷଣ୍ଣ ହୋଇଅଛି । ଚକୋର ଦମ୍ପତୀ ଉଷାର ମୁଖ-ଚନ୍ଦ୍ର ଅଦର୍ଶନରେ ବାଧ୍ୟ ହୋଇ ସତେ ଯେପରି ଚନ୍ଦ୍ରିକାର ପ୍ରଣୟ-ପାଶରେ ଧରା ଦେଇଅଛନ୍ତି । ବୃକ୍ଷ ଲତାଗଣ ନବପଲ୍ଲବରେ ଭୂଷିତ ହୋଇ ସତେ ଯେପରି ଉଷାର ଚରଣ-ରକ୍ତିମା ଗ୍ରହଣ କରିଅଛନ୍ତି । ଚନ୍ଦ୍ର ଉଷାର ଶ୍ରୀମୁଖ-ମାଧୁରୀ ସହତ ପ୍ରତଯୋଗିତାରେ ପରାଜତ ହେବାରୁ କୁନ, ସେବତୀ ଓ ମଲ୍ଲୀ କୋବଦାର ପ୍ରଭୃତର ବକାଶ ଛଳରେ ସତେ ଯେପରି ଧରଣୀର ଆଶ୍ରୟ କରିଅଛି । ଏହି ସକଳ ଋତୁବର୍ଣ୍ଣନର ଶେଷରେ ଅନରୁଦ୍ଧର ପ୍ରିୟା ସହତ ପଶାଖେଳ ଏବଂ ବାଣାସୁରର ରଥରୁ ମୟୂରଧ୍ୱଜର ପତନ ବର୍ଣ୍ଣିତ ହୋଇଅଛି । ଧ୍ୱଜପତନ ହେବାର ଦେଖି ବାଣ ଯୁଦ୍ଧ ଅତ ଆସନ୍ନ ମନେ କରି ଆତ୍ମପ୍ରସାଦ ଅନୁଭବ କରିବା ସମୟରେ ପ୍ରହରୀ ତାହାଙ୍କୁ କନ୍ୟାପୁରରେ ଗୋପନ ପ୍ରଣୟର ସମ୍ବାଦ ଜ୍ଞାପନ କରିଅଛି ।

ରଣଦୁର୍ମଦ ବାଣ ଏ ସମ୍ବାଦରେ ସ୍ୱୟଂ ଊଷାର ମେଢ଼ ଦ୍ୱାରରେ ଉପସ୍ଥିତ ହୋଇ ଏକ ପରମରୂପବାନ୍ ପୁରୁଷ ସହ କନ୍ୟା କ୍ରୀଡ଼ାନରତ ଥିବାର ଦେଖିବାକୁ ପାଇଲେ ।

ଏହିଠାରେ କବି ବାଣ ଚରିତ୍ରର ପ୍ରକୃତ ମହତ୍ତ୍ୱ ଫୁଟାଇବାକୁ ପ୍ରୟାସ କରିଅଛନ୍ତି । ନିଜର ଅଜ୍ଞାତ ସାରରେ ଏକମାତ୍ର କନ୍ୟାର ସ୍ଖଳନ, ତ୍ରିଭୁବନ ବିଜୟୀ ଅମିତ ବିକ୍ରମଶାଳୀ ପିତା ପକ୍ଷରେ ଏ ସମ୍ବାଦ ଏବଂ ସାକ୍ଷାତ୍ ଦର୍ଶନ ନିଶ୍ଚୟ ଅତି ମର୍ମନ୍ତୁଦ । ବାଣ ଉତ୍ତ୍ୟକ୍ତ ଓ କ୍ଷିପ୍ତ ପ୍ରାୟ ହୋଇ ଊଷାମେଢ଼ରେ ଉପସ୍ଥିତ ସତ୍ୟ, କିନ୍ତୁ କ୍ରୋଧ ତାହାଙ୍କୁ ହଠାତ୍ ଅନ୍ଧ କରି ପାରିନାହିଁ ବା ହିଂସା ତାହାଙ୍କୁ ହଠାତ୍ ରକ୍ତ ପିପାସୁ କରି ପାରି ନାହିଁ । ପ୍ରଥମେ କାମନନ୍ଦନର ରୂପମାଧୁରୀରେ ସେ ମୁଗ୍ଧ ହୋଇ ଦେଖିଛନ୍ତି :—

"ଦେଖିଲ ମେଢ଼ ଦ୍ୱାରେ ଦିବ୍ୟରୂପ । ନୀଳମଣି ଶ୍ୟାମ ଅନଙ୍ଗ-ରୂପ ।
ପୀତ ପଟ୍ଟଣୀ ଗଳେ ବନମାଳ । କେଶପ୍ରାନ୍ତ ଶୋଭା ସେବନ୍ତୀ ଫୁଲ ।
ସ୍ୱୟଂ କୃଷ୍ଣ ଶୋଭା । ଅମଳ କମଳ ଲୋଚନ ପ୍ରଭା । ୧୭ ।
କର କମଳ ମୃଣାଳ ପରାୟେ । କରେ ପଶାକାଠି ଦେଖିଲେ ରାୟେ ।
+ + + + + ।୧୮।"

ଏପରି ହେଲେହେଁ ପରେ ବାଣ ଓ ଅନିରୁଦ୍ଧ ଉଭୟଙ୍କ ମଧ୍ୟରେ ଯେଉଁ ଯୁଦ୍ଧର ସୂତ୍ରପାତ ହୋଇଅଛି, ତାହା କେବଳ ଅନ୍ୟାୟର ଦମନ ପାଇଁ । ସେ ରାଜା ଓ ବୀର, ପ୍ରଜା-ରଞ୍ଜନ ତାହାର ଧର୍ମ; ଯୁଦ୍ଧରେ ତାହାର ଆନନ୍ଦ । ଏପରି ଅବସ୍ଥାରେ ଅନ୍ୟାୟର ଅନୁମୋଦନ କରି ପାପର ଉପଯୁକ୍ତ ପ୍ରାୟଶ୍ଚିତ୍ତ ବିଧାନ ନ କଲେ ଲୋକରେ ତାହାର ନିନ୍ଦା ହେବ ଏବଂ ପ୍ରକୃତିରଞ୍ଜନ ଧର୍ମରେ ବାଧା ଲାଗିବ । ତେଣୁ ଯୁଦ୍ଧର ଅବତାରଣା କରି ଏଠାରେ କବି ବାଣ ଚରିତ୍ରର ଦୁଇଟି ବିଭିନ୍ନ ଦିଗ ଦେଖାଇ—ଊଷାର ପିତାରୂପେ

ଏବଂ ଶୋଣିତପୁରର ନଗରପଥ ଗୃହେ—ଚତୁଷ୍ପଥର ପୂର୍ଣ୍ଣତା ବିଧାନ କରି ଅଛନ୍ତି । ଶୀଘ୍ର ଶୀଘ୍ର ଅନିରୁଦ୍ଧ ଓ ବାଣ ଉଭୟଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ଲାଗିଲା । ପ୍ରଥମେ ଅନିରୁଦ୍ଧର ପରିଘ ଘାତରେ ବାଣ ମୂର୍ଚ୍ଛିତ ହୋଇ ଯାଇଥିଲେହେଁ ପରେ ମନ୍ତ୍ରୀ କୁମ୍ଭାଣ୍ଡର ପରାମର୍ଶ ଅନୁସାରେ ମାୟା ଯୁଦ୍ଧର ଅବତାରଣା କରି ତାହାଙ୍କୁ ପରାସ୍ତ କଲା ଏବଂ ନାଗ ପାଶରେ ବନ୍ଧନ କଲା । ପ୍ରିୟତମର ଏହି ବନ୍ଧନରେ କବି ଉଷାର ମର୍ମବ୍ୟଥା ଜାଗରିତ କରି ଏ ଛାନ୍ଦ ଶେଷ କରିଅଛନ୍ତି ।

ହରିବଂଶ ଓ ଭାଗବତର କଥାଭାଗରେ ବର୍ଷା ଓ ଶରତର ପ୍ରାକୃତିକ ବର୍ଣ୍ଣନା ଭିତର ଦେଇ ପ୍ରେମର ଗାଢ଼ତା ବା ପ୍ରେମିକ ପ୍ରେମିକାଙ୍କର ଶୃଙ୍ଗାର ରଚନା ସ୍ଥାନ ପାଇ ନ ଥିଲେହେଁ ରଥରୁ ଧ୍ୱଜ ପତନ, ବାଣ ଅନିରୁଦ୍ଧ ଯୁଦ୍ଧ ଏବଂ ଶେଷରେ ଅନିରୁଦ୍ଧଙ୍କର ନାଗ-ପାଶ ବନ୍ଧନ ପ୍ରସଙ୍ଗ ସ୍ଥାନ ପାଇଅଛି । ତେବେ ପାର୍ଥକ୍ୟ ଭିତରେ ଏତିକି ଯେ, ସେ ଉଭୟ ଗ୍ରନ୍ଥରେ ମୟୂରଧ୍ୱଜ ପତନ ପ୍ରସଙ୍ଗଟି ଅନିରୁଦ୍ଧ ହରଣ ପୂର୍ବରୁ ବର୍ଣ୍ଣିତ ହୋଇଅଛି । ତାହା ଛଡ଼ା ହରିବଂଶକାର ଅନିରୁଦ୍ଧଙ୍କ ବନ୍ଧନ ପରେ ବାଣ କର୍ତ୍ତୃକ ତାଙ୍କର ପ୍ରାଣ ଦଣ୍ଡର ଆଦେଶ ପ୍ରଦାନ କରିଅଛନ୍ତି ଏବଂ ଶେଷରେ ମନ୍ତ୍ରୀ କୁମ୍ଭାଣ୍ଡଙ୍କ ମୁଖରେ ପରାମର୍ଶ ଦେଇ ସେ ଆଦେଶର ପ୍ରତ୍ୟାହାର ମଧ କରିଅଛନ୍ତି । ଭାଗବତକାର ଅବଶ୍ୟ ଏ ପ୍ରସଙ୍ଗରେ ହରିବଂଶ-କାରଙ୍କ ପରି ଅଧିକଦୂର ଅଗ୍ରସର ହୋଇ ପ୍ରାଣଦଣ୍ଡାଜ୍ଞା ପ୍ରଦାନ କରି ନାହାନ୍ତି ବା ସେଥିପାଇଁ କୌଣସି କୈଫିୟତ୍ ମଧ ଦେଇ ନାହାନ୍ତି । ଆମ୍ଭମାନଙ୍କର ଯେପରି ମନେ ହୁଏ, କବି ଶିଶୁଶଙ୍କର ଏ ବିଷୟରେ ଭାଗବତ-କାରଙ୍କ ପଦାଙ୍କ ଅନୁସରଣ କରି ଅଛନ୍ତି । ମୟୂରଧ୍ୱଜ ପତନ ସମ୍ପର୍କରେ ଉଷାଭିଳାଷର କବି ସେ ଉଭୟ ଗ୍ରନ୍ଥର ବିବରଣୀକୁ

ଅକ୍ଷୁଣ୍ଣ ନ ରଖି ତାହାଙ୍କର କୌଣସି ଅଙ୍ଗହାନି କରି ନାହାନ୍ତି, ବରଂ ଶ୍ରୀବୃଦ୍ଧି ସାଧନ କରିଅଛନ୍ତି ଏବଂ ଧ୍ୱଜପତନର ଅବ୍ୟବହିତ ପରେ ଯୁଦ୍ଧର ସୂତ୍ରପାତ କରି ମହାଦେବଙ୍କ ବାକ୍ୟର ମର୍ଯ୍ୟାଦା ରକ୍ଷା କରିଅଛନ୍ତି ।

**ଏକାଦଶ ଛାନ୍ଦରେ** କବି ଅନିରୁଦ୍ଧର ପରାଜୟ ଓ ବନ୍ଧନରେ ଉଷା ପ୍ରାଣରେ ବ୍ୟଥା ଜାଗ୍ରତ କରି ଦୁଇଟି ହୃଦୟର ଅନ୍ତର୍ନିହିତ ପ୍ରେମର ମିଳନ ଗ୍ରନ୍ଥି କପରି ଦୃଢ଼, ତାହା ଦେଖାଇ ଅଛନ୍ତି । ପ୍ରେମର ଗାଢ଼ତା ପ୍ରଦର୍ଶନ କରିବା ପାଇଁ କବି ଏ ପର୍ଯ୍ୟନ୍ତ ଯେ ସକଳ ପ୍ରୟାସ କରିଥିଲେ, ସେଥିରେ କେବଳ ଅନିରୁଦ୍ଧର ହୃଦୟ ପୂର୍ଣ୍ଣ ଭାବରେ ବିକଶିତ ହୋଇ ଉଠି ଥିଲା ସତ, କିନ୍ତୁ ଉଷା ଦର—ମୁକୁଳିତ କମଳ-କଳିକାବତ୍ ଅନ୍ତରର ସମସ୍ତ ପ୍ରଣୟସୌରଭ ସେହି ଅନ୍ତରରେହିଁ ରଖିଥିଲା । ବର୍ତ୍ତମାନ ପ୍ରିୟତମର ବନ୍ଧନରେ ବିଷାଦ ମୂର୍ଚ୍ଛନାହେତୁ ପ୍ରେମିକା ପ୍ରାଣର ସେହି ସଞ୍ଚିତ ପ୍ରଣୟ-ସୌରଭ ଉଚ୍ଛ୍ୱସିତ ହୋଇ ଉଠିଛି ଓ ବିଶ୍ୱର ଜୀବନ ତନ୍ତ୍ରୀରେ ଏକ କରୁଣ କ୍ରନ୍ଦନ ଆନୟନ କରିଅଛି । ପ୍ରେମର ଅର୍ଦ୍ଧମୁକୁଳିତ କମଳ-କଳିକା ପ୍ରିୟତମର ବିରହରେ ଜଡ଼ତାର ସକଳ ମୋହ ଛୁଟାଇ ଦେଇ ଫୁଟି ଉଠିଛି ଏବଂ ଅନ୍ତର ଖୋଲି ପ୍ରାଣର ଅନନ୍ତ ଆକୁଳତା ଜଗତକୁ ଦେଖାଇ ପାରିଛି । ନାରୀ ତାହାର ହୃଦୟର ବଳରେ ଅନେକ ସମୟରେ ଅନ୍ତରର ବେଦନାକୁ ଅନ୍ତରରେ ଲୀନ କରି ଥାଏ ସତ, କିନ୍ତୁ ଏ ସ୍ଥଳରେ ସେ ଅନ୍ତର୍ଲୀନତା ସେ ଆକୁଳତାର ବାହ୍ୟ ବିକାଶରେ ବାଧା ଦେଇ ପାରି ନାହିଁ । ପ୍ରିୟତମର ଅଦର୍ଶନରେ କାଳିଦାସଙ୍କ ରତି ଦେବୀ ଯେପରି ବିଳାପ କରି ଥିଲେ, ଉଷା ଠିକ୍ ତାହାହିଁ କରିଅଛି । ଅତୀତ ସ୍ମୃତିର ଉଦ୍‌ବୋଧନ ଓ ବିଳାପ କଳାର

ଅନ୍ତଃକରଣରେ ତାହାର କ୍ରନ୍ଦନର ବେଗ କ୍ରମଶଃ ବର୍ଦ୍ଧିତ ହୋଇ ଅଛି । ସେ ଯେ ନିଜର ଭବିଷ୍ୟତ ପାଇଁ ଚିନ୍ତା କରି ଦୁଃଖ ପ୍ରକାଶ କରିଅଛି ତାହା ନୁହେ, ପରନ୍ତୁ ପ୍ରିୟତମର ସ୍ୱାମୀ ଭାଗ୍ୟବିପର୍ଯ୍ୟୟ ଭାବନାରେ ସେ ଶୋକରେ ଆକୁଳ ହୋଇଅଛି । ପ୍ରେମର ପ୍ରକୃତ ମାଧୁରୀ ଆସ୍ୱାଦନରେ ଆତ୍ମସତ୍ତା ରହେ ନାହିଁ, ପ୍ରେମର ମୂଳନୀତି ଆତ୍ମ ବିସର୍ଜନ । ପ୍ରେମିକ ବଜ୍ରର ଦାରୁଣ ଆଘାତ ନିଜର ବକ୍ଷରେ ସହି ପ୍ରେମିକାର ଅଙ୍ଗକୁ ଅକ୍ଷତ ରଖିବାକୁ ପ୍ରୟାସ କରେ । ଏଠାରେ ଊଷା ଠିକ୍ ତାହାହିଁ କରିଅଛି ।

"ମଦନ ନନ୍ଦନ ତୁମ୍ଭେ ଶ୍ରୀକୃଷ୍ଣ ନାତି । ତୁମ୍ଭଙ୍କୁ ଅପୂର୍ବ ଏବା କେଉଁ ପ୍ରକୃତି । ୧୬ ।

+ + + +

କେମନ୍ତେ ଜନନୀ ତୋର ଧଇବ ହିଆ । ଆହା ପ୍ରାଣନାଥ ମୋତେ କଲୁ କି ବାହା ।୨୧।"

ସାରଳା ମହାଭାରତରେ ମଧ୍ୟ ଊଷାର ବିଳାପ ଲିପିବଦ୍ଧ ହୋଇଅଛି । କିନ୍ତୁ ଊଷାଭିଳାଷରେ ତାହା ଯେପରି ପ୍ରଣିଧାନୀ, ମହାଭାରତରେ ସେପରି ନୁହେଁ । ଶୂଦ୍ରମୁନି ଅଳ୍ପ କେତୋଟି ପଦରେ ଊଷାର ବିଳାପ ଶେଷ କରିଅଛନ୍ତି, କିନ୍ତୁ ଶିଶୁଶଙ୍କର ତାହା ପାଇଁ ଗୋଟିଏ ସ୍ୱତନ୍ତ୍ର ଛାନ୍ଦର ଅବତାରଣା କରିଅଛନ୍ତି ।

ସହଚରୀଗଣ ଊଷାକୁ ଶାନ୍ତ କରିବା ପାଇଁ ବିବିଧ ପ୍ରବୋଧ ବାକ୍ୟ ପ୍ରୟୋଗ କଲେହେଁ ସେ ସମସ୍ତ ନିଷ୍ଫଳ ହୋଇଅଛି । ଏହି ବିରହ ବିଳାପର ଚିତ୍ରଣରେ କବି ଯଥେଷ୍ଟ ଦକ୍ଷତାର ସହିତ ପ୍ରେମିକା ହୃଦୟର ଉଦରଟି ଖୋଲି ଦେଖାଇ ପାରିଅଛନ୍ତି । ଅନିରୁଦ୍ଧଙ୍କର ଏହି ବନ୍ଧନ ସଂବାଦ କେଶବଙ୍କୁ ପ୍ରଦାନ କରିବା ନିମିତ୍ତ ଶେଷରେ ମହର୍ଷି ନାରଦଙ୍କର ଅବତାରଣା କରାଯାଇଅଛି । ନାରଦଙ୍କଠାରୁ ସମ୍ବାଦ ପାଇଁ କେଶବପ୍ରମୁଖ ଯାଦବ ବୀରଗଣ ଶୋଣିତପୁର ଅଭିମୁଖରେ ଅଭିଯାନ ଆରମ୍ଭ କରି ଅଛନ୍ତି । ଏହି ସ୍ଥାନଟିରେ କବି ହରିବଂଶ ଓ ଭାଗବତର ବର୍ଣ୍ଣନାକୁ ଅନେକାଂଶରେ ଗ୍ରହଣ କରିଅଛନ୍ତି ।

**ଦ୍ୱାଦଶ ଛାନ୍ଦରେ** କବି ଏହି ଅଭ୍ୟାନର ସଂକ୍ଷିପ୍ତ ସୂଚନା ଦେଇ ବାଣାସୁର ଓ କେଶବଙ୍କ ମଧ୍ୟରେ ତୁମୂଳ ଯୁଦ୍ଧର ସୂତ୍ରପାତ କରି ଅଛନ୍ତି । ସହସ୍ର ପ୍ରହରଣପରିଶୋଭିତ ସହସ୍ରବାହୁ ବାଣ ଶିବଗଣ ସହ ଯାଦବ ଯୋଧ ସମନ୍ୱିତ ଯଦୁକୁଳ-ତିଳକଙ୍କର ସମ୍ମୁଖୀନ ହୋଇ ଅଛି । ବହୁ ରକ୍ତପାତ ପରେ କେଶବ ତାହାର ଦୁଇଟି ମାତ୍ର ଭୁଜ ଅବଶିଷ୍ଟ ରଖି ଅନ୍ୟାନ୍ୟ ସକଳ ଭୁଜ ଚକ୍ର ପ୍ରୟୋଗରେ ଛେଦନ କରି ପକାଇଲେ ଏବଂ ସେ ଶିବଙ୍କ ସ୍ନେହ ଓ ଆଦରର ପାତ୍ର ହୋଇ ଥିବାରୁ ତାହାର ଜୀବନ ନାଶ କଲେ ନାହିଁ । ଏହିପରି ଭାବରେ ବିଜୟଶ୍ରୀରେ ମଣ୍ଡିତ ହୋଇ ସେ ଯେତେବେଳ ଅନିରୁଦ୍ଧର ବନ୍ଧନ-ଶାଳାରେ ଉପସ୍ଥିତ ହେଲେ, ସେତେବେଳେ ଗରୁଡ଼ର ଦର୍ଶନରେ ପାଶ ସ୍ଥିତ ନାଗଗଣ ଭୀତ ହୋଇ ପଳାୟନ କରିବାରୁ ଅନିରୁଦ୍ଧ ବନ୍ଧନ ମୁକ୍ତ ହେଲେ । ତଦନନ୍ତର ନବଦଂପତିଙ୍କ ସଙ୍ଗରେ ଘେନି କୃଷ୍ଣ ପରମ ଆନନ୍ଦରେ ଦ୍ୱାରବତୀ ଅଭିମୁଖରେ ପ୍ରତ୍ୟାବର୍ତ୍ତନ କଲେ । ଦ୍ୱାରକାର ଯୁବକ ଯୁବତୀଗଣ ବହୁଦିନ ପରେ ଅନିରୁଦ୍ଧଙ୍କୁ ଦେଖିବାକୁ ପାଇ ଏବଂ ତାହା ସଙ୍ଗେ ସଙ୍ଗେ ଅପୂର୍ବ ସୁନ୍ଦରୀ ଉଷାକୁ ଦେଖି ଆନନ୍ଦ-ସ୍ରୋତରେ ଭାସିବାକୁ ଲାଗିଲେ । ନବଦଂପତିଙ୍କୁ ଦେଖିବା ପାଇଁ ନାଗର ନାଗରୀବୃନ୍ଦ ଯେଉଁ ଉତ୍ସୁକତା ଓ ଆଗ୍ରହ ଦେଖାଇଲେ, ତାହା କବିଙ୍କ ତୂଳକାରେ ସରସ ଓ ପ୍ରାଣ ସ୍ପର୍ଶୀ ହୋଇ ପାଠକ ଓ ସମାଲୋଚକ ଉଭୟଙ୍କୁ ମୁଗ୍ଧ କରି ଦେଇ ଅଛି । ଆମ୍ଭମାନଙ୍କର ଯେପରି ମନେ ହୁଏ, ରସକଲ୍ଲୋଳକାର କବି ଦୀନକୃଷ୍ଣ ଶ୍ରୀକୃଷ୍ଣଙ୍କ ଜନ୍ମ ସମ୍ବାଦ ଶ୍ରବଣରେ ଗୋପ-ଯୁବତୀମାନଙ୍କର ଯେଉଁ ଉତ୍ସୁକତା ବର୍ଣ୍ଣନା କରି ଅଛନ୍ତି, ସେଥିରେ ଅନେକ ପରିମାଣରେ ଶିଶୁଶଙ୍କରଙ୍କ ପ୍ରଭାବ ପଡିତ ହୋଇଅଛି ।

"ଆସନ୍ନ ଯୁବତୀ ଏକ ଅନେକଙ୍କ ସଭ । ଗୁରୁ ଗୌରବ ତେଜନ୍ତି ଉତ୍ସୁକ ଭାବ ।
ହାର ଗୁନ୍ଥୁଥିଲେ କେହ୍ନୁ ହରଷ ବାଟେ । ବସନ ଅଧେ ପିନ୍ଧିଲେ ଧାଇଁବା ଉଚାଟେ ।
ବୀଣା ବାଉଥିଲେ କେହ୍ନୁ ସମା ଛାଡ଼ିଗଲେ । ବିଭ୍ରମେ ଲୁଚ ଅର୍ଦ୍ଧଂଶେ ଭୂମୀ ମନି ବାଳା ।
ଲୁଳ ବଧୂମାନେ ଜଣା ଗବାକ୍ଷରେ ରହି । ବନ୍ଧୁ ପ୍ରଶଂସା କରନ୍ତି ଏକ ଯୋଗ ହୋଇ ।
ରାଜମାର୍ଗେ ବାରବିଳାସିନୀ ଭିଡ଼ ହୋଇ । ବାନ୍ଧୁତୋରଣାରେ କରପଲ୍ଲବ ଲମ୍ବାଇ ।
ଉଚ୍ଛଳିତ କରନ୍ତନ୍ତି ମଙ୍ଗଳ କଳଶ । କୁସୁମ ବୃଷ୍ଟି ପ୍ରାସ୍ତ୍ରେକ ମନ୍ଦ ମନ୍ଦ ହାସ ।
କନକ କଦଳୀ ନନ୍ଦେ ଜାନୁଯୁଗ ଶୋଭା । ଲୋଚନ-ଶଫରୀ ସବ ମଙ୍ଗଳର ଶୋଭା ।"

ତଦନ୍ତର ରୁକ୍ମିଣୀ ଓ ସତ୍ୟଭାମା ପ୍ରମୁଖ ହରିପ୍ରିୟାଗଣ ପୁତ୍ର ଓ ପୁତ୍ରବଧୂଙ୍କୁ ଯଥୋଚିତ ବିଧିବିଧାନରେ ଅଭ୍ୟର୍ଥନା କରି ଗୃହକୁ ନେଲେ ଏବଂ ଗୋଟିଏ ଶୁଭଲଗ୍ନ ସ୍ଥିର କରି ବିବାହାଦି କ୍ରିୟା କଳାପ ସମାପନ କଲେ । ଉଷାର ଅଭିଳାଷକୁ ଏହିଠାରେ ପୂର୍ଣ୍ଣ କରି କବି କାବ୍ୟଟିର ଉପସଂହାର କରିଅଛନ୍ତି । ଏହି ଉପାଖ୍ୟାନ ଅଂଶଟି ଅନେକ ପରିମାଣରେ ହରିବଂଶ ଓ ଭାଗବତର ଅନୁରୂପ ହେଲେହେଁ କେତେକ ସ୍ଥଳରେ ସାମାନ୍ୟ ଇତର ବିଶେଷ ଦେଖାଯାଏ । ଭାଗବତକାରଙ୍କ ମତରେ କେଶବ ବାଣର ଚାରୋଟି ମାତ୍ର ବାହୁ ଅବଶିଷ୍ଟ ରଖି ଅନ୍ୟାନ୍ୟ ସକଳ ବାହୁ ଛେଦନ କରିଥିଲେ । କିନ୍ତୁ ଏ ସ୍ଥଳରେ ଶିଶୁଙ୍କର ହରିବଂଶକାରଙ୍କ ବର୍ଣ୍ଣନା ଅନୁସାରେ ଗ୍ରନ୍ଥଟିକୁ ଲୋକଶିକ୍ଷାର ଉପଯୋଗୀ କରିବା ପାଇଁ ଦୁଇଟି ମାତ୍ର ବାହୁ ଅବଶିଷ୍ଟ ରଖିଅଛନ୍ତି । ତାହାଛଡ଼ା କାବ୍ୟର ଶେଷରେ କବି ପୁନର୍ବାର ଏକ ବିବାହ କ୍ରିୟାର ଉଲ୍ଲେଖ କରିଅଛନ୍ତି । ହରିବଂଶକାର ଓ ଭାଗବତକାର ଏ ପ୍ରସଙ୍ଗରେ ନୀରବ । କଳାକୁଶଳତା ଅଥବା ବର୍ଣ୍ଣନାର ଚମତ୍କାରିତା ଦେଖାଇବା ଉଦ୍ଦେଶ୍ୟରେ ଅବଶ୍ୟ ଏ ବିବାହର ଅବତାରଣା ହୋଇନାହିଁ । ଆମ୍ଭମାନଙ୍କର ଯେପରି ମନେ ହୁଏ, ପୌରାଣିକଗଣ ଯେପରି ଭାବରେ ଗାନ୍ଧର୍ବ ବିଧାନ ଅନୁସାରେ

ପ୍ରେମିକ ପ୍ରେମିକାଙ୍କର ମିଳନ ଘଟାଇ ଅଛନ୍ତି, ତାହାକୁ କବି ପୂର୍ଣ୍ଣମାତ୍ରାରେ ଅନୁମୋଦନ କରିବା କୁଣ୍ଠିତ ହୋଇ ଦ୍ୱାରବତୀରେ ଏ ଦ୍ୱିତୀୟଥର ବିବାହର ବର୍ଣ୍ଣନା କରିଅଛନ୍ତି । ଯେଉଁ ଯୁଗରେ ଏବଂ ଯେଉଁ ଧରଣର ସମାଜରେ କବି ବିଦ୍ୟମାନ ଥିଲେ, ସେ ଯୁଗରେ ଏବଂ ସେହି ସମାଜରେ ଗାନ୍ଧର୍ବ ବିବାହ ପ୍ରଚଳିତ ଥିଲେହେଁ ଜନସାଧାରଣଙ୍କଦ୍ୱାରା ତାହା ଆଦୃତ ହେଉ ନ ଥିଲା ବୋଲି ଅନୁମିତ ହୁଏ । ତାହା ହୋଇ ନ ଥିଲେ, ଗାନ୍ଧର୍ବ ବିବାହ ପରେ ପୁନଶ୍ଚ ଏକ ବିବାହ ଉତ୍ସବର ବର୍ଣ୍ଣନା କାବ୍ୟରେ ସ୍ଥାନ ପାଇ ନ ଥାନ୍ତା ବୋଲି ଆମ୍ଭମାନଙ୍କର ବିଶ୍ୱାସ ।

ଉପସଂହାରରେ ବକ୍ତବ୍ୟ ଏହି ଯେ, ହରିବଂଶକାର ଓ ଭାଗବତକାର ଏହି ବାଣ ବା ଉଷା ଉପାଖ୍ୟାନପ୍ରସଙ୍ଗରେ ଅନିରୁଦ୍ଧଙ୍କଠାରୁ ଅଧିକ ଦୂର ଅଗ୍ରସର ହୋଇ ଶୋଣିତପୁରର ସିଂହାସନ ମନ୍ତ୍ରୀ କୁମ୍ଭାଣ୍ଡଙ୍କୁ ପ୍ରଦାନ କରିଅଛନ୍ତି ଏବଂ ବାଣକୁ ମହାଦେବଙ୍କ ଗଣ ମଧ୍ୟରେ ଗ୍ରହଣ କରି ଉପାଖ୍ୟାନଟି ଶେଷ କରି ଅଛନ୍ତି । କବି ଶିଶୁଶଙ୍କର କିନ୍ତୁ ଉଷାର ଅଭିଳାଷ ପୂର୍ଣ୍ଣ କରି କାବ୍ୟଟିର ଉପସଂହାର କରିଅଛନ୍ତି । ଉଷା ଏବଂ ଅନିରୁଦ୍ଧଙ୍କ ଚରିତ୍ର ଚିତ୍ରଣ ଓ ପ୍ରଣୟ ବର୍ଣ୍ଣନରେ ତାଙ୍କର ସକଳ ଶକ୍ତି ନିୟୋଜିତ । ଚରିତ୍ରଚିତ୍ରଣର ଚମତ୍କାରିତା ସୂକ୍ଷ୍ମଭାବରେ ଅନୁଧ୍ୟାନ କଲେ ଜଣାଯାଏ ଯେ, ପ୍ରେମିକ ପ୍ରେମିକା ଗୋପନରେ ମିଳିତ ହେଲେହେଁ ସେମାନଙ୍କ ଚରିତ୍ରରେ ବନ୍ଧନହୀନ ବାସନା ବା ଉଦ୍ଦାମ ଉଚ୍ଛୃଙ୍ଖଳତା ସ୍ଥାନ ପାଇନାହିଁ । ପରନ୍ତୁ ସଂଯତ ଚରିତ୍ର-ନିଷ୍ଠା ଏବଂ ନୀତି-ଅନୁମୋଦିତ ଆଶ୍ରିତ ଚିତ୍ରଟିର ପ୍ରତ୍ୟେକ ଉନ୍ମେଷରେ ଦେଖିବାକୁ ମିଳେ । ପ୍ରଣୟର ଆଲେଖ୍ୟ ଅଙ୍କନରେ କବି ଯେ ପରିମାଣରେ ସିଦ୍ଧହସ୍ତତା

ଦେଖାଇ ଅଛନ୍ତି, ତାହା ଅତିମାନୁଷିକ ନ ହେଲେହେଁ ପ୍ରାଣକୁ ସ୍ୱର୍ଗ ରାଜ୍ୟର ସୌରଭରେ ଶୁଦ୍ଧପୂତ କରିଦିଏ । ସୂକ୍ଷ୍ମଦ୍ରଷ୍ଟାଗଣ ଦେଖି ପାରିବେ ଯେ, ତହିଁରେ ଦୀର୍ଘ ବିରହ ବା ନିରବଚ୍ଛିନ୍ନ ମିଳନର ହା-ହୁତାଶ ବା ଅତୃପ୍ତ ଆକାଂକ୍ଷା ନାହିଁ । ପ୍ରେମିକା ସହିତ ମିଳିତ ହେବାକୁ ପ୍ରେମିକ ଯେଉଁ ପରିମାଣରେ ଲାଳାୟିତ, ପ୍ରେମିକ ସହିତ ମିଳିତ ହେବାକୁ ପ୍ରେମିକା ଠିକ୍ ସେହି ପରିମାଣରେ ଲାଳାୟିତ । ଏପରି ହେଲେହେଁ କାବ୍ୟର ନାୟକ ଅନିରୁଦ୍ଧ ଯେ କେବଳ ପ୍ରେମିକ-ଶିରୋମଣି, ତାହା ନୁହେଁ— ପରନ୍ତୁ ସେ ଜଣେ ଆଦର୍ଶ ଯୋଦ୍ଧା ଏବଂ ଚରିତ୍ରବାନ୍ ଯୁବକ । ତାହାର ଚରିତ୍ର ନିଷ୍ଠା ଏବଂ ସମର ପ୍ରୀତି ଏତେ ଅଧିକ ଯେ, ଊଷାର ପ୍ରଣୟ ତହିଁରେ ବାଧା ଦେଇ ପାରିନାହିଁ । ଏହି ମୁହୂର୍ତ୍ତରେ ଯେ ପ୍ରେମିକ, ପର ମୁହୂର୍ତ୍ତରେ ସେ ବୀରବେଶରେ ଅମିତବିକ୍ରମୀ ବାଣର ସମ୍ମୁଖୀନ ହୋଇ ସ୍ୱୀୟ ବଳବୀର୍ଯ୍ୟର ପରିଚୟ ଦେବାକୁ କୁଣ୍ଠିତ ହୋଇ ନାହିଁ । ସେହିପରି ନାୟିକା ଊଷା ଯେ କେବଳ ପ୍ରେମିକା, ତାହା ନୁହେ—ପରନ୍ତୁ ସେ ଜଣେ ପରମ ରୂପବତୀ ତଥା ଗୁଣବତୀ ରମଣୀ । ସେ ଅସୁର-ନନ୍ଦିନୀ ହେଲେହେଁ ହୃଦୟଟି ତାର ନବନୀତ-କୋମଳ ଏବଂ ପ୍ରେମ-ଢଳଢଳ । ସ୍ଥୂଳତଃ କବି ନାୟକ ନାୟିକା ଉଭୟଙ୍କ ଜୀବନର ଚିତ୍ରଟିକୁ ବିଭିନ୍ନ ଦିଗରୁ ଯେ ଭାବରେ ଦେଖାଇ ଅଛନ୍ତି, ତାହାର ଅନୁଶୀଳନ କଲେ ପୁରୁଷ ଓ ନାରୀ ପ୍ରକୃତିର ପାର୍ଥକ୍ୟ ଅତି ସ୍ପଷ୍ଟଭାବରେ ପ୍ରତିପନ୍ନ ହୁଏ । ପୁରୁଷ ଶରୀରବଳରେ କଷ୍ଟସହିଷ୍ଣୁ, ନାରୀ କିନ୍ତୁ ହୃଦୟବଳରେ ତଦପେକ୍ଷା ଅଧିକ । ପୁରୁଷ ହୃଦୟ ପ୍ରଶସ୍ତ ସତ୍ୟ, କିନ୍ତୁ ରମଣୀ-ହୃଦୟର ଗଭୀରତା ନିକଟରେ ତାହା ପରାଜିତ । ପୁରୁଷ ହୃଦୟର ବାହ୍ୟ-ବଳୀନତା ଗୁଣରେ ନାରୀଠାରୁ ମହତ୍ତର ହେଲେହେଁ ନାରୀ ହୃଦୟର ଅନ୍ତର୍ଲୀନତା ଗୁଣରେ ମହୀୟସୀ । ସ୍ଥୂଳତଃ ପୁରୁଷ ପ୍ରକୃତି

ଓ ରମଣୀ ରହସ୍ୟ ଉନ୍ମୋଚନ କରିବାରେ କବି ଏହି ଯେଉଁ ସିଦ୍ଧହସ୍ତତା ଦେଖାଇ ଅଛନ୍ତି, ତାହା ଅନନ୍ୟସାଧାରଣ ।

ଉଷାଭିଳାଷ କାବ୍ୟଟି ପ୍ରଧାନତଃ ଶୃଙ୍ଗାର-ରସାତ୍ମକ । ହାସ୍ୟ ଓ କରୁଣ ରସଦ୍ୱୟ ଗୌଣ ଭାବରେ ଅବଲମ୍ବିତ । ବିରହରେ ବିପ୍ରଲମ୍ଭ ଶୃଙ୍ଗାର ଏବଂ ମିଳନରେ ସମ୍ଭୋଗ ଶୃଙ୍ଗାର ପରିସ୍ଫୁଟ । ଅନିରୁଦ୍ଧ ଧୀରୋଦାତ୍ତ ନାୟକ ଏବଂ ଉଷା ମୁଗ୍ଧା ନାୟିକା । କାବ୍ୟଟି କ୍ଷୁଦ୍ର ହେଲେହେଁ ସେଥିରେ କବିଙ୍କ ଅସାଧାରଣ ପ୍ରତିଭା ଆଶାନୁରୂପ ଭାବରେ ଫୁଟି ଉଠିବାକୁ ଅବସର ପାଇଅଛି । କାବ୍ୟରେ ସଂସ୍କୃତ କାବ୍ୟ ନାଟକ ଓ ପୁରାଣ ଇତିହାସମାନଙ୍କର ଛାୟା ଏବଂ ଆଲଂକାରିକ ମୂର୍ଚ୍ଛନାର ମଧୁର ସମାବେଶ ଦେଖିଲେ କବିଙ୍କର ବହୁଶାସ୍ତ୍ରଦର୍ଶିତା ସହଜେ ପ୍ରମାଣିତ ହୁଏ । ବସନ୍ତ, ବର୍ଷା ଓ ଶରତ୍ ପ୍ରଭୃତି ଋତୁବର୍ଣ୍ଣନା ଏବଂ ନାୟକ ନାୟିକାଙ୍କର ହାବଭାବାଦିର ବିଶଦୀକରଣ ଓ ଅନ୍ତ-ର୍ମୁଖିନୀ ପ୍ରବୃତ୍ତିର ବହିର୍ମୁଖୀନତା ଦେଖିଲେ ଚରିତ୍ରଚିତ୍ରଣ-କଳାରେ କବିଙ୍କର ଦକ୍ଷତା ପ୍ରତିପନ୍ନ ହୁଏ । ଶୃଙ୍ଖଳବଚନ ରଚନାରେ ନାରୀର ସୌନ୍ଦର୍ଯ୍ୟ ବର୍ଣ୍ଣନା ଏବଂ ଋତୁଚିତ୍ରର ଅଙ୍କନରେ ବିଶ୍ୱ ପ୍ରକୃତିର ସୌନ୍ଦର୍ଯ୍ୟ-ପ୍ରକଟନ ପ୍ରଭୃତି ତାଙ୍କ ସୌନ୍ଦର୍ଯ୍ୟ-ପ୍ରତିପତ୍ତିର ନିଦର୍ଶନ । ଏତଦ୍‌ବ୍ୟତୀତ କାବ୍ୟଟିର ଆନୁଷଙ୍ଗିକ ବର୍ଣ୍ଣନାମାନ ପାଠକଲେ କବିଙ୍କ ସମସାମୟିକ ସମାଜରେ ନାରୀଶିକ୍ଷା ଓ ଦ୍ୟୂତକ୍ରୀଡ଼ା ପ୍ରଭୃତିର ପ୍ରଚଳନ ଥିଲା ବୋଲି ଜଣାଯାଏ ।

ମିଳନ ଓ ବିରହର ବର୍ଣ୍ଣନାରେ ଏବଂ ପ୍ରାକୃତିକ ବିଭବର ଉପସ୍ଥାପନରେ ଅଦ୍ଭୁତ ଶକ୍ତିମତ୍ତା ଓ ନାୟକ ନାୟିକାଙ୍କ ଚରିତ୍ର-ଚିତ୍ରଣରେ ହବ୍ୟ କଳା-କୁଶଳତାର ପରିଚୟ କବି ଯେଉଁ ପରିମାଣରେ କାବ୍ୟରେ ପ୍ରଦାନ କରିଅଛନ୍ତି, ସେହି ପରିମାଣରେ କଳ୍ପନାର ବିଳାସ ଶବ୍ଦ

କଥାଚନ୍ଦ୍ରରେ ଦେଖାଇ ପାଉଥାନ୍ତେ, ତେବେ ପରବର୍ତ୍ତୀ ଯୁଗର ଉପେନ୍ଦ୍ର ଦୀନକୃଷ୍ଣ ପ୍ରଭୃତିଙ୍କ ସଙ୍ଗେ ସେ ସମାନ ପଦବୀ ଅଧିକାର କରିପାରି ଥାନ୍ତେ ବୋଲି ଆମ୍ଭମାନଙ୍କର ଦୃଢ଼ ବିଶ୍ୱାସ । କଳ୍ପନାହିଁ କାବ୍ୟ କବିତାରେ ଅତିମାନୁଷିକତା ବା ଅତୀନ୍ଦ୍ରିୟତାର ଆରୋପ କରି ପାଠକ ତଥା ସମାଲୋଚକର ବିସ୍ମୟୋଦ୍ରେକ କରିବାକୁ ସମର୍ଥ ହୁଏ । ଶିଶୁଶଙ୍କରଙ୍କ କଥାଚନ୍ଦ୍ରରେ କଳ୍ପନାର ସେପରି କୌଣସି ବିଳାସ ଦେଖାଯାଏ ନାହିଁ । ପୌରାଣିକ କଥାନକର ଅସ୍ଥିକଙ୍କାଳ ଉପରେ ସେ ନିଜର ବର୍ଣ୍ଣନାପାଟବ ଓ କଳାନୈପୁଣ୍ୟ ଦେଖାଇ ଯେଉଁ ଶିଳ୍ପରଚନା କରିଅଛନ୍ତି, କଳ୍ପନାର ଅଭାବରେ ତାହା ଆଶାନୁରୂପ କମନୀୟ ହୋଇ ପାରି ନାହିଁ ବୋଲି କହିବାକୁ ହେବ । ଉଷାଭିଳାଷ ବ୍ୟତୀତ କବିଙ୍କର ଅନ୍ୟ କୌଣସି କୃତି ଥିବାର ସନ୍ଧାନ ଆମ୍ଭେମାନେ ପାଇନାହୁଁ । ତଥାପି ଆମ୍ଭମାନଙ୍କର ମନେହୁଏ ଯେ, ଉଷାଭିଳାଷର କ୍ଷୁଦ୍ର କଳେବର ଭିତରେ ଯେଉଁ ପ୍ରତିଭା ସ୍ଫୁରିତ ହୋଇଅଛି, ତହିଁରୁ ଏହିପରି ଏକାଧିକ କାବ୍ୟର ସୃଷ୍ଟି ସମ୍ଭବପର ହୋଇଥିବ । କାଳର କବଳରେ ପଡ଼ି ସେ ସକଳ ଯଦି ନିଷ୍ପେଷିତ ହୋଇ ଯାଇଥିବ, ତେବେ ଆମ୍ଭମାନଙ୍କର ଅନୁମାନ ସେହି ଅନୁମାନରେହିଁ ଚିରକାଳ ପର୍ଯ୍ୟବସିତ ହୋଇ ରହିବ । ନତୁବା କାଳକ୍ରମେ ତାହା ପ୍ରତ୍ୟକ୍ଷ ପ୍ରମାଣ ବଳରେ ଲୋକ ଲୋଚନର ଗୋଚରୀଭୂତ ହେବା ବିଚିତ୍ର ନୁହେଁ । ଅତୀତର ଅନ୍ଧ ତାମସରୁ ଏହି ଅମୂଲ୍ୟ ରତ୍ନଟିର ଉଦ୍ଧାରରେ ଉତ୍କଳ ବାଣୀଙ୍କ କଳାବିଭବ ଯେ ପ୍ରକାଶ ପାଇବ—ଏଥିରେ କୌଣସି ସନ୍ଦେହ ନାହିଁ ।

ଉଷା ଓ ଅନିରୁଦ୍ଧ ଉଭୟଙ୍କ ପରିଣୟ କ୍ରିୟାରୁ ଜଣାଯାଏ ଯେ, ପ୍ରାଗୈତିହାସିକ ଯୁଗରେ ଅସୁରମାନଙ୍କ ସହିତ ଆର୍ଯ୍ୟମାନଙ୍କର

ସାମାଜିକ ସଂପର୍କ ଥିଲା । ଅନେକେ ହୁଏତ ଆମ୍ଭମାନଙ୍କର ଏ ଉକ୍ତିରେ ଅବିଶ୍ୱାସ କରି ପାରନ୍ତି । କାରଣ ସେମାନଙ୍କର ଧାରଣା ଯେ, ଅସୁର-ମାନେ ନରମାଂସଭୋଜୀ ରକ୍ତଲୋଲୁପ ଅସଭ୍ୟ ଜାତି ବିଶେଷ । ପିତୃପିତାମହକ୍ରମେ ସେମାନଙ୍କର ଏହି ଧାରଣା ବଦ୍ଧମୂଳ ହୋଇଅଛି । ଅସୁରମାନଙ୍କର ଇତିବୃତ୍ତ ଆଲୋଚନା କଲେ, ଏହି ଧାରଣା କିପରି ଅମୂଳକ ଓ ଭିତ୍ତିହୀନ, ତାହା ସହଜରେ ଧରିପଡ଼େ । ବେଦରୁ ଜଣାଯାଏ ଯେ, ପ୍ରାଚୀନକାଳରେ ଅସୁରମାନେ ଏକ ସୁସଭ୍ୟ ଓ ସମୁନ୍ନତ ଜାତି ଥିଲେ । ବେଦରେ ଅସୁ ଶବ୍ଦର ଅର୍ଥ ପ୍ରଜ୍ଞା ବା ବିଦ୍ୟା । ଯେଉଁ ଜାତି ଏହି ପ୍ରଜ୍ଞା ବା ବିଦ୍ୟା ଜାଣନ୍ତି, ସେହି ଜାତି ଅସୁର ନାମରେ ଅଭିହିତ । ଋକ୍‌ବେଦରେ ବରୁଣ ଓ ଇନ୍ଦ୍ର ଅସୁର ନାମରେ କଥିତ । ବୈଦିକ ମନ୍ତ୍ରମାନଙ୍କରେ ବରୁଣ ଦେବତା କ୍ଷତ୍ର, ସାମ୍ରାଜ୍ୟ, ଜ୍ୟୋତି-ର୍ବିଜ୍ଞାନ ଏବଂ ମାୟାର ଅଧିପତିରୂପେ ପ୍ରସିଦ୍ଧି ଲାଭ କରିଥିବାର ଦେଖାଯାଏ । ଅଗ୍ନି ଓ ସବିତା ପ୍ରଭୃତି ମଧ୍ୟ ବେଦରେ ବରୁଣଙ୍କ ପରି ଅସୁର ନାମ ଗ୍ରହଣ କରିଅଛନ୍ତି । ରୁଦ୍ର ବା ଶିବ ଅସୁରମାନଙ୍କର ପ୍ରଧାନ ଆରାଧ୍ୟ ଥିବାର ପ୍ରମାଣ ମଧ୍ୟ ସେହି ବେଦରୁ ମିଳେ ।

ଅନୁମିତ ହୁଏ, ଆର୍ଯ୍ୟଗଣ ସପ୍ତସିନ୍ଧୁ ପ୍ରଦେଶରେ ବସତି ସ୍ଥାପନ କରିବା ପୂର୍ବରୁ ଏହି ଭାରତଭୂମିର ଉତ୍ତର ପଶ୍ଚିମ ଭାଗରେ ଅବସ୍ଥିତ ଆସିରିଆ ନାମକ ଏକ ଦେଶ ପ୍ରବଳ ପରାକ୍ରମଶାଳୀ ହୋଇ ପୂର୍ବାଭି-ମୁଖରେ ସପ୍ତସିନ୍ଧୁ ପ୍ରଦେଶ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲା । ଏହି ଆସିରିଆର ଅଧିବାସୀମାନେ ଅସୁର ନାମରେ ପରିଚିତ । ଅସୁର ମର୍ଦ୍ଦକ ସେମାନଙ୍କର ପ୍ରଧାନ ଆରାଧ୍ୟ ଦେବତା ଏବଂ ଗୋଟିଏ ପକ୍ଷଯୁକ୍ତ ଚକ୍ର ବା ମଣ୍ଡଳ ତାହାଙ୍କର ବାହନ । ସେହିପରି ସେମାନଙ୍କର ପ୍ରତିବେଶୀ ଇରାଣୀୟମାନଙ୍କ ପ୍ରଧାନ ଦେବତା 'ଅହୁର ମଜ୍‌ଦା' ନାମରେ

କଥିତ ଏବଂ ପକ୍ଷଯୁକ୍ତ 'ଗରୁତ୍ମାନ୍' ତାଙ୍କର ବାହନ । ପରବର୍ତ୍ତୀ କାଳରେ ଏହି ଉଗ୍ରଗାମୀଗଣ ଅସିରୀୟ ବା ଅସୁର ସଭ୍ୟତାରେ ମଧ୍ୟ ପ୍ରାଦୁର୍ଭୂତ ହୋଇଥିଲେ । ତେଣୁ ଉଭୟ ଜାତିର ଆରାଧ୍ୟ ଦେବତା ଓ ସେମାନଙ୍କ ବାହନରେ ଏପରି ସାମ୍ୟ ଦେଖାଯାଏ । ଅନେକେ ମନେ କରନ୍ତି ଯେ, ପରବର୍ତ୍ତୀକାଳରେ ଆର୍ଯ୍ୟଶାସ୍ତ୍ରମାନଙ୍କରେ ଗରୁଡ଼ ବା ଗରୁତ୍ମାନର ପ୍ରଭୃତି ଏହି ଅସୁର ପ୍ରଭାବର ପରିଚାୟକ । ଆର୍ଯ୍ୟଗଣ ଯେତେବେଳେ ସପ୍ତସିନ୍ଧୁ ପ୍ରଦେଶରେ ବସତି ସ୍ଥାପନ କରିବା ପାଇଁ ପ୍ରଥମେ ପ୍ରୟାସ କରିଥିଲେ, ସେତେବେଳେ ଏହି ଅସିରୀୟ ବା ଅସୁରମାନଙ୍କ ସଙ୍ଗେ ସେମାନଙ୍କର ବହୁ ବିବାଦ ବିସଂବାଦ ସଂଘଟିତ ହୋଇଥିଲା । ବେଦରେ ଏହି ଆର୍ଯ୍ୟ ଅସୁର ଯୁଦ୍ଧର ବିଶଦ ବିବରଣ ବର୍ଣ୍ଣିତ । ବର୍ତ୍ତମାନ ପଞ୍ଜାବର ମହେଞ୍ଜୋଦାରୋ ଓ ହରପ୍ପା ପ୍ରଭୃତି ସ୍ଥାନରେ ଭୂଗର୍ଭରୁ ଯେଉଁ ନୂତନ ଐତିହାସିକ ଆବିଷ୍କ୍ରିୟା-ମାନ ହୋଇଅଛି, ସେ ସମସ୍ତ ଏହି ଅସୁର ସଭ୍ୟତାର ଏବଂ ଆର୍ଯ୍ୟ-ଅସୁର ଯୁଦ୍ଧର ମୂକ ସାକ୍ଷୀ । ବେଦରଚନାର ଶେଷଭାଗରେ ଆର୍ଯ୍ୟଗଣ ଅସୁରମାନଙ୍କୁ ସପ୍ତସିନ୍ଧୁ ପ୍ରଦେଶରୁ ବିତାଡ଼ିତ କରି ଦେଇଥିଲେ ସତ, କିନ୍ତୁ ଅସୁର ସଭ୍ୟତାର ପ୍ରଭାବକୁ ପରିହାର କରିପାରି ନ ଥିଲେ । ତାର ଫଳରେ ଶିବ ଓ ଗରୁଡ଼ ପ୍ରଭୃତି ଅସୁର ଦେବତା ଆର୍ଯ୍ୟମାନଙ୍କ ଦେବତା ଶ୍ରେଣିଭୁକ୍ତ ହୋଇଅଛନ୍ତି ଏବଂ ଇନ୍ଦ୍ର, ସବିତା ଓ ବରୁଣ ପ୍ରଭୃତି ବେଦରେ ଅସୁର ବୋଲି ପ୍ରଶଂସିତ ଓ ସ୍ତୁତ ହୋଇ ଅଛନ୍ତି ।

ଆର୍ଯ୍ୟମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ପରବର୍ତ୍ତୀ କାଳରେ ଅସୁରଗଣ ଭାରତର ପୂର୍ବ ଓ ଦକ୍ଷିଣ ଭାଗରେ ବସତି ସ୍ଥାପନ କରିଥିଲେ । ଗଙ୍ଗା ଓ ଯମୁନାର ଅବବାହିକାରେ କଂସ ଓ ଜରାସନ୍ଧ ଏବଂ ପ୍ରାଗ୍‌ଜ୍ୟୋତିଷପୁରରେ ଭଗଦତ୍ତ ଓ ନରକ ପ୍ରଭୃତିଙ୍କର ନାମ

ଉଲ୍ଲେଖଯୋଗ୍ୟ । କାବ୍ୟଯୁଗର ଇତିହାସରୁ ଅସୁରମାନଙ୍କ ଯୁଦ୍ଧ କୌଶଳ ଓ ନୌବିଜ୍ଞାନ ଜ୍ଞାନର ସ୍ପଷ୍ଟ ପରିଚୟ ମିଳେ । ମହାଭାରତରେ ସମୁଦ୍ରକୁ "ଅସୁରାଣାଂ ଚ ବାନ୍ଧବଂ" ବୋଲି ଲୁହାଯାଇ "ବ୍ରାହ୍ମଣାନାଂ ପରିଭବାଦସୁରାଃ ସଲିଳେଶୟାଃ" ବୋଲି ବର୍ଣ୍ଣିତ ହୋଇଅଛି । ସେମାନେ ଯେ ଜଳଯାତ୍ରା ଓ ଜଳଯୁଦ୍ଧ ପ୍ରବୃତ୍ତରେ ପାରଗ ଥିଲେ, ଏହା ତାହାର ଜ୍ୱଳନ୍ତ ପ୍ରମାଣ । ଆହୁରି ମଧ୍ୟ ରାମାୟଣରେ ରାବଣ ଓ ଇନ୍ଦ୍ରଜିତ୍ ପ୍ରଭୃତିଙ୍କର ଯୁଦ୍ଧ କୌଶଳ ଓ ରାଜନୀତିକ ଜ୍ଞାନର ବର୍ଣ୍ଣନା ଯେଉଁ ଭାବରେ ଦେଖିବାକୁ ମିଳେ, ସେଥିରୁ ଅନୁମିତ ହୁଏ ଯେ, ଅସୁର ସଭ୍ୟତା ଗୋଟାଏ ସମୁନ୍ନତ ଓ ବିଶାଳ ସଭ୍ୟତା ଏବଂ ଆର୍ଯ୍ୟ ସଭ୍ୟତା ଅନେକ ବିଷୟରେ ତାହାଠାରେ ଋଣୀ । ଭାଗବତର ବର୍ଣ୍ଣନାରୁ ମିଳେ ଯେ, ନର୍ମଦାନଦୀର ଉତ୍ତର ପାର୍ଶ୍ୱରେ ଅସୁରରାଜ ବଳି ଭୃଗୁମାନଙ୍କ ପୌରୋହିତ୍ୟରେ ଯଜ୍ଞାନୁଷ୍ଠାନ କରୁଥିଲାବେଳେ ଶ୍ରୀକୃଷ୍ଣ ବାମନ ରୂପରେ ସେଠାରେ ଉପସ୍ଥିତ ହୋଇଥିଲେ ଏବଂ ତାଙ୍କଠାରୁ ତ୍ରିପାଦ ଭୂମିଦାନ ଗ୍ରହଣ କରିବା ଛଳରେ ତାହାଙ୍କୁ ପାତାଳଗାମୀ କରିଥିଲେ । ଏହି ପାତାଳପୁରର ଅବସ୍ଥିତି ଅବଧାରଣ କରିବାକୁ ଯାଇ ଐତିହାସିକଗଣ କପିଳମୁନିଙ୍କ ପାତାଳ ଆଶ୍ରମକୁ କଲିକତାର ସୁନ୍ଦରବନ ନିକଟରେ ପ୍ରମାଣିତ କରି ଅଛନ୍ତି । ଏଥିରୁ ମନେହୁଏ ଯେ, ପ୍ରାଚୀନକାଳରେ ଭାରତର ପୂର୍ବୋପକୂଳ ପାତାଳ ନାମରେ କଥିତ ହେଉଥିଲା । ତେଣୁ ବଳି ଶ୍ରୀକୃଷ୍ଣଙ୍କ ଦ୍ୱାରା ନର୍ମଦାକୂଳରୁ ବିତାଡ଼ିତ ହୋଇ ଏହି ପୂର୍ବ ଉପକୂଳରେ ବସତି ସ୍ଥାପନ କରିଥିବା ଅସମ୍ଭବ ନୁହେଁ । ଉଷାଭିଳାଷର ବାଣ ଏହି ବଳିର କୁମର ଏବଂ ଶିବଙ୍କ ପ୍ରସାଦରେ ଅମିତ ବିକ୍ରମଶାଳୀ ହୋଇ ଶୋଣିତପୁରରେ ରାଜଧାନୀ ସ୍ଥାପନ କରିଥିଲା ବୋଲି

ହରିବଂଶ ଓ ଭାଗବତରୁ ମିଳେ । ଉତ୍କଳର ବ୍ୟାସ କବି ସାରଳାଦାସ ତାଙ୍କ ମହାଭାରତର ମଧ୍ୟପର୍ବରେ ଏହି ବାଣ-ଉପାଖ୍ୟାନର ଅବତରଣିକାରେ ଲେଖି ଅଛନ୍ତି :—

"ଶ୍ରୋଣିତପୁର ବୋଲି ବୈତରଣୀର ତୀର । ବାଣାସୁର ବୋଲି ତହିଁ ଥିଲା ନୃପବର ।
ମହାଦେବ ସେବି ସେହି ପାଇଥିଲା ବର । ଯୁଗେ ଯୁଗେ ଅମର ସେ ସହସ୍ରେକ କର ।"

ଏହି ଶ୍ରୋଣିତପୁର ହରିବଂଶ ଓ ଭାଗବତର ଶୋଣିତପୁର ଅଟେ ଏବଂ ତାହା ବର୍ତ୍ତମାନ ଉତ୍କଳର ବାଲେଶ୍ୱର ଜିଲ୍ଲାରେ ଅବସ୍ଥିତ । ସୁନହଟ ତାହାର ଆଧୁନିକ ନାମ, କାରଣ କବି ଶିଶୁଶଙ୍କର ବାଣନନ୍ଦିନୀ ଉଷାର ବାସଭବନ ଯେଉଁ 'ଉଷାମେଢ'ର ନାମୋଲ୍ଲେଖ କରିଅଛନ୍ତି, ତାହା ଏହି ସୁନହଟ ଗ୍ରାମର ଉତ୍ତର ଦିଗରେ ଅବସ୍ଥିତ । ଅଦ୍ୟାପି ତାହାର ସ୍ତୂପୀକୃତ ଭଗ୍ନାବଶେଷ ସେଠାରେ ବିଦ୍ୟମାନ ଥାଇ ଦର୍ଶକ ପ୍ରାଣରେ ସେହି ଦୂର ଅତୀତର ଗୌରବମୟ ସ୍ମୃତି ଜାଗ୍ରତ କରୁଅଛି ।

ହରିବଂଶର ବର୍ଣ୍ଣନାରୁ ମିଳେ ଯେ, କାର୍ତ୍ତିକେୟ ଭ୍ରାତୃସ୍ନେହର ବଶବର୍ତ୍ତୀ ହୋଇ ବାଣଙ୍କୁ ମୟୂରଧ୍ୱଜ ଓ ମୟୂର ବାହନ ପ୍ରଦାନ କରିଥିଲେ । ତେଣୁ ପରବର୍ତ୍ତୀ କାଳରେ ସେହି ବଂଶର ରାଜାମାନେ ମୟୂରଧ୍ୱଜୀ ନାମରେ ପରିଚିତ ହୋଇ ମୟୂରକୁ ବାହନ ଜ୍ଞାନରେ ପବିତ୍ର ପକ୍ଷୀ ବୋଲି ମନେ କରିବାର ଅନୁମାନ ଐତିହାସିକ ପକ୍ଷରେ ଅଯୌକ୍ତିକ ନୁହେଁ । ମୟୂରଭଞ୍ଜ ଓ ତମଲୁକର ପ୍ରାଚୀନ ଇତିହାସ ଆଲୋଚନା କଲେ ଜଣାଯାଏ ଯେ, ପୂର୍ବେ ସେହି ରାଜ୍ୟ ମୟୂରଧ୍ୱଜୀ ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା । ସେମାନେ ମୟୂରକୁ ଅତି ପବିତ୍ର ପକ୍ଷୀ ଜ୍ଞାନ କରି ମୟୂର ବଧ ନ କରିବାକୁ ରାଜ୍ୟରେ ଘୋଷଣା ପ୍ରଚାର କରିଥିଲେ । ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ମୟୂରଭଞ୍ଜରେ

ଏହି ଅଦେଶ ଅକ୍ଷୁଣ୍ଣ ଅଛି ଏବେ ତାହାର ରାଜାମାନେ ମଧ ଏପର୍ଯ୍ୟନ୍ତ ମୟୂର ଚିହ୍ନକୁ ସେମାନଙ୍କ ବଂଶ ଚିହ୍ନରୂପେ ବ୍ୟବହାର କରି ଆସୁ ଅଛନ୍ତି । ବାଣାସୁରର ରାଜ୍ୟ ମେଦିନାପୁର (ତମଲୁକ ନେଇ) ଠାରୁ ଦକ୍ଷିଣରେ ବାଣପୁରର ଭଗବତୀଙ୍କ ପର୍ଯ୍ୟନ୍ତ ବିସ୍ତୃତ ଥିବାର କିଂବଦନ୍ତୀ ଅଛି । ବର୍ତ୍ତମାନ ସମସ୍ତର ମୟୂରଭଞ୍ଜରାଜ୍ୟ ପ୍ରାଚୀନ କାଳରେ ଛୋଟନାଗପୁରର ଦକ୍ଷିଣାଞ୍ଚଳଠାରୁ ଗଞ୍ଜାମ ଜିଲ୍ଲା ପର୍ଯ୍ୟନ୍ତ ବିସ୍ତୃତ ଥିଲା। ଘୁମୁସର, ବୌଦ, ବାମନଘାଟି ଓ ବଣେଇ ପ୍ରଭୃତି ସ୍ଥାନର ବିଭିନ୍ନ ଅଂଶରୁ ଆବିଷ୍କୃତ ତାମ୍ରଲିପିମାନ ଆମ୍ଭମାନଙ୍କର ଏହି ଉକ୍ତିର ସମର୍ଥନ କରେ । ଏପିଗ୍ରାଫିକା ଇଣ୍ଡିକା (Epigraphica Indica) ର ଆଲୋଚନା କଲେ ଜଣାଯାଏ ଯେ, ପ୍ରାଚୀନ କାଳରେ ଓଡ଼ିଶାର ସମସ୍ତ ଗଡ଼ଜାତ ଦିନେ ଏହି ମୟୂରଧ୍ୱଜୀ ରାଜାମାନଙ୍କ ଅଧୀନରେ ଥିଲା । ମୟୂରଭଞ୍ଜର ବର୍ତ୍ତମାନ ସୂର୍ଯ୍ୟବଂଶୀୟ ରାଜାଙ୍କ ଆଦି ପୁରୁଷ ସେହି ମୟୂରଧ୍ୱଜୀ ଅସୁର ରାଜାଙ୍କୁ ଭଞ୍ଜନ ଅର୍ଥାତ୍ ପରାସ୍ତ କରି ସେଠାରେ ନୂତନ ରାଜବଂଶର ପ୍ରତିଷ୍ଠା କରିଥିଲେ ।

ବର୍ତ୍ତମାନ ଅସୁର ଜାତି ଦାସମାନଙ୍କ ସଙ୍ଗେ ମିଶିଯାଇ ଦ୍ରାବିଡ଼ୀୟ ଜାତିରେ ପରିଣତ ହୋଇଥିବାର ଅନୁମାନ କରାଯାଏ । ଛୋଟନାଗପୁର, ଓଡ଼ିଶା ଓ ମଧ୍ୟ ପ୍ରଦେଶର ବିଭିନ୍ନ ସ୍ଥାନମାନଙ୍କରେ ବାସ କରୁଥିବା କେତେକ ଜାତି ଅଦ୍ୟାପି ଆପଣାକୁ ଅସୁର ବଂଶଧର ବୋଲି ପ୍ରକାଶ କରନ୍ତି । ଆମ୍ଭମାନଙ୍କର ଯେପରି ମନେହୁଏ, ଦିନେ ଓଡ଼ିଶାର ସମଗ୍ର ପୂର୍ବ ଉପକୂଳରେ ଅସୁର ସଭ୍ୟତା ଓ ଅସୁର ରାଜତ୍ୱ ପ୍ରତିଷ୍ଠିତ ହୋଇଥିଲା । କେନ୍ଦ୍ରାପଡ଼ାର ପ୍ରତ୍ନତତ୍ତ୍ୱ ଆଲୋଚନାରୁ ମିଳେ ଯେ, ପ୍ରାଚୀନ ଯୁଗରେ କଜର ନାମକ ଅସୁର ସେଠାରେ ରାଜତ୍ୱ କରୁଥିଲା ଏବଂ ଲଳିତଗିରିର ପ୍ରତ୍ୟନ୍ତ ପ୍ରଦେଶରେ ତାହାର

ରାଜଧାନୀ ଅବସ୍ଥିତ ଥିଲା । ଆର୍ଯ୍ୟମାନଙ୍କ ସହ ଯୁଦ୍ଧରେ ସେ ନିହତ ହୋଇଥିଲେହେଁ ତାହାର ନାମାନୁସାରେ ଅସୁରେଶ୍ୱର, କନ୍ଦର୍ପେଶ୍ୱର୍‌ପାଟ୍ଣା ପ୍ରଭୃତି କେତେକ ସ୍ଥାନ ନାମିତ ହୋଇଥିଲା । ଆର୍ଯ୍ୟନେତା ବଳରାମ କନ୍ଦର୍ପ-କନ୍ୟା ତୁଳସୀର ପାଣିଗ୍ରହଣ କରି ଯେଉଁ ସ୍ଥାନରେ ବସତି ସ୍ଥାପନ କରିଥିଲେ, ତାହା ତୁଳସୀକ୍ଷେତ୍ର ନାମରେ ପରିଚିତ ଏବଂ ଅଦ୍ୟାପି କ୍ଷେତ୍ର ରୂପେ ଲୋକଙ୍କ ଦ୍ୱାରା ସମ୍ମାନିତ ହେଉଅଛି । ଆର୍ଯ୍ୟ ଓ ଅସୁରମାନଙ୍କ ମଧ୍ୟରେ ବିବାହାଦି କ୍ରିୟା ପ୍ରଚଳିତ ଥିବାର ଏହିପରି ଭୂରି ଭୂରି ପ୍ରମାଣ ପ୍ରାଚୀନ ପୁରାଣ-ମାନଙ୍କରୁ ମିଳେ । ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠା, ବାଣନନ୍ଦିନୀ ଉଷା, ହିଡ଼ମ୍ବ ଭଗିନୀ ହିଡ଼ମ୍ବା ପ୍ରଭୃତି ଅସୁର କୁଳରେ ଜାତ ହୋଇ ଥିଲେହେଁ ଯଯାତି, ଅନିରୁଦ୍ଧ ଓ ଭୀମ ପ୍ରଭୃତି ଆର୍ଯ୍ୟବୀରମାନେ ସେମାନଙ୍କର ପାଣିଗ୍ରହଣ କରି ଥିଲେ ।

ପୁରାଣର ଏହି ଉଷା-ଉପାଖ୍ୟାନରେ ଗ୍ରୀକ୍‌ଦେଶୀୟ ଏକ କାହାଣୀର କଥାଭାଗ ମିଶାଇ କବି ରାଧାନାଥ 'ଉଷା' ନାମକ ଏକ ଖଣ୍ଡକାବ୍ୟ ପ୍ରଣୟନ କରିଅଛନ୍ତି । ଏପରି କରିବାଦ୍ୱାରା ଏକପକ୍ଷରେ ସେ ନିଜର କଥାସଂଗଠନ ଚାତୁରୀ ସୁନ୍ଦରଭାବ ରେ ଦେଖାଇ ପାରି-ଅଛନ୍ତି ସତ, କିନ୍ତୁ ଅନ୍ୟ ପକ୍ଷରୁ ଦେଖିଲେ ଦେଶର ଅତୀତ ଇତିବୃତ୍ତ ପ୍ରତି ଦାରୁଣ ନିର୍ମମତା ଦେଖାଇ ଅଛନ୍ତି ବୋଲି ଆମ୍ଭେମାନେ କହିବୁ । ଶିଶୁଶଙ୍କରଙ୍କ ଉଷାଭିଳାଷ ସେ ପାଠ କରିଥିବେ କି ନା— ଏ ବିଷୟରେ ସନ୍ଦେହ ଜାତ ହୋଇପାରେ । କିନ୍ତୁ ସାରଳାଦାସଙ୍କ ମହାଭାରତ ସେ ନିଶ୍ଚୟ ପାଠ କରିଥିବେ । ପୁରାଣର ସେହି ଶୋଣିତପୁର ବୈତରଣୀତୀରରେ ଅବସ୍ଥିତ ବୋଲି ଶୂଦ୍ରମୁନି କହି ଅଛନ୍ତି । ଏଥିରୁ ଅନୁମିତ ହୁଏ ଯେ, ପ୍ରାଚୀନ ଯୁଗରେ ବର୍ତ୍ତମାନ

ବାଲେଶ୍ୱରର ସୁବନ୍ଦହ ଏକ ବିଶାଳ ଜନପଦ ଥିଲା ଏବଂ ବୈତରଣୀର ତୀରଦେଶ ପର୍ଯ୍ୟନ୍ତ ବ୍ୟାପିଥିଲା । ସେଠାରେ ଯେ ଶିବୋପାସକ ବାଣାସୁରର ରାଜଧାନୀ ଥିଲା, ଏଥିରେ କୌଣସି ସନ୍ଦେହ ନାହିଁ । ଅଦ୍ୟାପି ବାଲେଶ୍ୱରରେ ବାଣେଶ୍ୱର ଶିବଙ୍କର ମନ୍ଦିର ବାଣାସୁରର ସେହି ଅତୀତସ୍ମୃତି ବକ୍ଷରେ ଧାରଣ କରି ମୂକ ସାକ୍ଷୀରୂପେ ଦଣ୍ଡାୟମାନ । ଏପରି ଐତିହାସିକ ବୃତ୍ତାନ୍ତ ଥିଲେହେଁ ପୁରାଣର ସେହି ଶୋଣିତପୁର, ବାଣେଶ୍ୱର ମନ୍ଦିର ଓ ଉଷାମେଢ଼ ରାଧାନାଥଙ୍କ କଳ୍ପନାର କବଳରେ ପଡ଼ି ସକଳ ଐତିହାସିକ ମହତ୍ତ୍ୱ ହରାଇ ଅଛନ୍ତି । ରାଧାନାଥ ତାଙ୍କ କାବ୍ୟ-କବିତାରେ ଅନେକସ୍ଥ ଉତ୍କଳର ପ୍ରାକୃତିକ ଓ ଐତିହାସିକ ସ୍ଥାନମାନ ଉପସ୍ଥାପିତ କରିଅଛନ୍ତି ସତ, ଉଷାକାବ୍ୟରେ ମଧ୍ୟ ଉଷାମେଢ଼, ନୂପୁର, ପ୍ରଥମାପଦା ଓ ଶୋଣିତପୁରର ନାମୋଲ୍ଲେଖ କରିଅଛନ୍ତି ସତ, କିନ୍ତୁ ଜାତୀୟ ସାହିତ୍ୟରେ ବିଜାତୀୟ କଳ୍ପନାର ପ୍ରତିଷ୍ଠା କରିବାକୁ ଯାଇ ସେ ଏଠାରେ ଦେଶର ଇତିହାସ ଉପରେ ପ୍ରକୃତ ଦୃଷ୍ଟି ଦେବାକୁ ଭୁଲି ଯାଇଅଛନ୍ତି । ତାଙ୍କର ଶୋଣିତପୁର—ତାଙ୍କର ଉଷାମେଢ଼ର ଅନ୍ତରାଳରେ ଉଷାଭିଳାଷ କାବ୍ୟ ସଦୃଶ ଇତିହାସର ସେପରି କୌଣସି ଗୌରବମୟ ଅତୀତ ନାହିଁ । ଯାହା କିଛି ଅଛି, ତାହା କେବଳ କଳ୍ପନା ଓ କିମ୍ବଦନ୍ତୀର ପର୍ଯ୍ୟବସିତ କହିଲେ ଚଳେ ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି

# କୃତଜ୍ଞତା ସ୍ୱୀକାର

ମୋର ପ୍ରିୟ ବନ୍ଧୁ ଶ୍ରୀମାନ୍ ବାବୁ ଜଗଦାନନ୍ଦ ମହାନ୍ତି ବି. ଏ. ତାଙ୍କର ପଢ଼ା ସମୟରେ ନିଜ ଗ୍ରାମରୁ "ଉଷାଭିଳାଷ" ପୋଥି ଖଣ୍ଡିଏ ପାଇ ତାକୁ ନକଲ କରି ମୋତେ ୧୯୨୪ ମସୀହାରେ ଦେଇଥିଲେ । ଏହାପରେ ବ ୪ ର୍ଷ ବିତିଗଲା । ଗତ ବର୍ଷ ମୋର ପ୍ରିୟ ବନ୍ଧୁ ଶ୍ରୀମାନ୍ ଗିରୀଶଚନ୍ଦ୍ର ରାୟ ବି. ଏ. ଖଲ୍ଲିକୋଟରୁ ଖଣ୍ଡିଏ ପୋଥି ଆଣି ଦେଲେ । ପୁଣି ଏ ବର୍ଷ ବାଲେଶ୍ୱର ଜିଲ୍ଲାର 'ମଞ୍ଜୁରୀ' ଜମିଦାରଙ୍କ ଘରୁ ଆଉ ଖଣ୍ଡିଏ ପୋଥି ମିଳିଲା । ଏହି ତିନି ଖଣ୍ଡି ପୋଥି ସାହାଯ୍ୟରେ "ଉଷାଭିଳାଷ" ସଙ୍କଳିତ ହେଲା । 'ପ୍ରାଚୀ ସମିତି' ସେମାନଙ୍କଠାରେ କୃତଜ୍ଞ ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି

# ଉଷାଭିଳାଷ ।

## ପ୍ରଥମ ଛାନ୍ଦ

ବଣ—ମାଳବ

ଜମ୍ବୁଦ୍ୱୀପ ଉତ୍ତର ଖଣ୍ଡ ଶେଷେ
ଦକ୍ଷିଣ ସିନ୍ଧୁ ଉତ୍ତର ପାରୁଶେ । ୧ ।

ଶ୍ରୀପୁରୁଷୋତ୍ତମ ପବିତ୍ର ଦେଶେ
ନୀଳ ମହୀଧର ନାମ ପ୍ରକାଶେ । ୨ ।

ଅଶେଷ ବ୍ରହ୍ମାଣ୍ଡ ଭୂରୁହ କନ୍ଦ
ତହିଁରେ ବିଜୟ ପରମାନନ୍ଦ । ୩ ।

ଭଗତ-ଜନ-ଭୃଙ୍ଗ-ଅରବିନ୍ଦ
ସାଧୁଙ୍କ ଲୋଚନ-ଚକୋର-ଚନ୍ଦ୍ର । ୪ ।

୨—୨ :—ଜ୍ୟୋତି ପ୍ରକାଶେ (ଝ) ।

---

୩ । ଭୂରୁହ କନ୍ଦ — ପର୍ବତମାନଙ୍କର ମୂଳ ଅର୍ଥାତ୍ ଶ୍ରେଷ୍ଠ ।

୪ । ଭଗତ-ଜନ-ଭୃଙ୍ଗ-ଅରବିନ୍ଦ — ଭକ୍ତମାନେ ହେଲେ ଭ୍ରମର, ଭଗବାନ ହେଲେ ତାଙ୍କ ସେବ୍ୟ ପଦ୍ମରୂପ । ସାଧୁଙ୍କ········ଚନ୍ଦ୍ର — ଚକୋର ଯେପରି ଚନ୍ଦ୍ର କିରଣ ପାନ କରେ, ସାଧୁଙ୍କ ଚକ୍ଷୁ ସେହିପରି ଚନ୍ଦ୍ରରୂପୀ ଭଗବାନଙ୍କ ରୂପପାନ କରୁଅଛି ଅର୍ଥାତ୍ ତାଙ୍କଠାରେ ଅଖି ସର୍ବଦା ଲାଗି ରହୁଅଛି ।

ନିଗମ-ତତ୍ତ୍ୱଭୂତ ଅଭିରାମ
ଯୋଗି-ଜନଙ୍କର ନିର୍ବାଣ ଧାମ । ୫ ।

ରୁଚିର ଚିତ୍ର ନୀଳମଣି ଶ୍ୟାମ
ଅଭିନବ ରୂପ ବଳିତ କାମ । ୬ ।

ବିଶ୍ୱ ପ୍ରପଞ୍ଚ ଯାର ଖେଳରସ
ଏକରୁ ଅନେକ ହୋଏ ପ୍ରକାଶ । ୭ ।

ଅନେକ ଏକ ହୋଅନ୍ତି ଶେଷ
ଏହି ରୂପକୁ ଚିଲସ୍ୟେ ଅଭ୍ୟାସ । ୮ ।

ବଚନ ଲୋଚନ ମନଙ୍କୁ ହୃତ
ଆକାଶ ମତ ମହିମା ଯାହାର । ୯ ।

କେ ଅବା ଲଭିବ ତାହାଁର ପାର
କହିବାକୁ ଯେତେ ବୁଦ୍ଧି ଯାହାର । ୧୦ ।

ନିର୍ମଳ ନବଜଳଧର ତନୁ
କଂସ-କେଶୀ-ବକା-ତୃଣା-କୃଶାନୁ । ୧୧ ।

---

୫ । ନିଗମତତ୍ତ୍ୱଭୂତ — ବେଦର ସାର ପ୍ରତିପାଦ୍ୟ ବିଷୟ ଅର୍ଥାତ୍ ଭଗବାନଙ୍କ ବିଷୟ । ନିର୍ବାଣ — ମୋକ୍ଷ ।

୬ । ରୁଚିର — ସୁନ୍ଦର । ଚିତ୍ର — ଆଶ୍ଚର୍ଯ୍ୟଜନକ । ନୀଳମଣି-ଶ୍ୟାମ — ନୀଳମଣି ପରି କୃଷ୍ଣ । ବଳିତ କାମ — କାମକୁ ଜିଣିଲା ।

୭ । ବିଶ୍ୱ ପ୍ରପଞ୍ଚ — ବିଶ୍ୱର ପ୍ରକାଶ ବା ବିଶ୍ୱ ସଂସାର । ଖେଳରସ — ଲୀଳାରସ ।

୮ । ଚିଲସ୍ୟେ (ଚିହ୍ନସ୍ୟେ) — ସେଠାରେ ଲକ୍ଷ୍ୟ କରିବା ।

୯ । ଆକାଶ ମତ ମହିମା — ଆକାଶ ଯେପରି ଅନନ୍ତ ଓ ଅସୀମ, ଭଗବାନଙ୍କର ମହିମା ସେହିପରି ଅନନ୍ତ ଓ ଅସୀମ ଅଟେ ।

୧୧ । କଂସ···କୃଶାନୁ — ମଥୁରାମଙ୍ଗଳ ଟୀକା ଦ୍ରଷ୍ଟବ୍ୟ ।

ଅଖିଳ ଗୁରୁଜନ କାମଧେନୁ
ଯାଦବ-କୁଳ-କମଳର ଭାନୁ । ୧୨ ।

ଶ୍ରୀଗୋପୀନାଥଙ୍କ ବେନି ଚରଣ
ଭବ-ଭୟ-ଜନଙ୍କର ଶରଣ । ୧୩ ।

ସକଳ ମଙ୍ଗଳ ମୂଳ କାରଣ
ଶିଶୁ ଶଙ୍କରର ମନ ହରଣ । ୧୪ ।

ମୁଁ କ୍ରୂରମତି ଯଦି ସୁଜ୍ଞଜନ
ଭଲ ମନ୍ଦ ବେନି କଷିବା ସ୍ଥାନ । ୧୫ ।

ତଥାପି କୃପାମ୍ୟେ ପୁରୁଷୋତ୍ତମ
ପର ଦୋଷରେ ସେ କ୍ଷମା ବିଧାନ । ୧୬ ।

ସର୍ପ-ସ୍ୱରୂପ ଦ୍ୱୋମ୍ୟେ ଖଳ ଜନ
ଯଦି ଦେଇ ତାକୁ କ୍ଷୀର ଭୋଜନ । ୧୭ ।

ଗରଳ ଛାଡ଼ଇ ସେ କୋପମନ
କର ଶୂଳନେତ୍ରେଣ ଦଂଶିତ ଜନ । ୧୮ ।

ନିର୍ଗୁଣ ଗୁଣି-ଜନଙ୍କର ପାଶ
ଲଭନ୍ତି ଲାଭ ସେ ସ୍ଥାନ ବିଶେଷ । ୧୯ ।

୧୬—୧ :—ଶୀଳ (ଖ) ।

---

୧୨ । ଅଖିଳ—ସମ୍ପୂର୍ଣ୍ଣ । ଗୁରୁଜନ କାମଧେନୁ—କାମଧେନୁ ପରି ଗୁରୁମାନଙ୍କର ଇଚ୍ଛା ପୂରଣକାରୀ । ଯାଦବ...... ..ଭାନୁ—ଯାଦବ ବଂଶ ହେଲେ ପଦ୍ମ, କୃଷ୍ଣ ହେଲେ ସୂର୍ଯ୍ୟ; ସେ ଯାଦବବଂଶର ପୁଷ୍ଟି କର୍ତ୍ତା ଅଟନ୍ତି ।

୧୮ । ଦଂଶିତ ଜନ—ଯେବକୁ କାମୁଡ଼ନ୍ତି ।

ରୂପାହିଁ ସୁନା ହୋଏ ରସ ଯୋଗେ
କାନ୍ତି ଲଭଇ ସେ ଅଗ୍ନି-ସଂଯୋଗେ । ୧୦ ।

ତେଣୁ ମୁଁ ସୁଜନ ପାଦେ ଙ୍କର
ଆଜ୍ଞା ମାଗଇ ଯୋଡ଼ି ବେନି କର । ୧୧ ।

ଏଣୁ ଅପ୍ରାଧ ମୋର କ୍ଷମା କର
ବୋଲିରେ ତୁମ୍ଭେ ଯେ ଦୟାସାଗର । ୧୨ ।

ଛନ୍ଦିବି ଛାନ୍ଦ ଉଷା-ଅଭିଳାଷ
ରସିକ ଜନଙ୍କ ବିନୋଦ-ବାସ । ୧୩ ।

ଶ୍ରୀକୃଷ୍ଣ-ଚରିତ ବିଚିତ୍ର ରସ
ଫୁରୁ ଭାଷାମତେ ମଧୁର ରସ । ୧୪ ।

ଅସୁର ନୃପତି ପ୍ରତାପ ଘୋର
ବାଣାସୁର ନାମେ ବଳି-କୁମର । ୧୫ ।

ଦୁର୍ଜୟ କଟକ ଶୋଣିତପୁର
ଅଗମିତ ସୁର-ନର-ଅସୁର । ୧୬ ।

୧୬—୧ : —ଦଇତ (ଖ) । ୧୬—୨ :—ଅଗମ୍ୟ ନର ଜନର ଅସୁର (ଘ) ।

---

୧୩ । ବିନୋଦ-ବାସ—ଲୀଳାର ସ୍ଥାନ ବା ଆନନ୍ଦ ଧାମ ।

୧୪ । ମଧୁର ରସ – ଶୃଙ୍ଗାର ରସ ।

୧୫ । ବଳି କୁମର—ପ୍ରହ୍ଲାଦଙ୍କ ନାତି ଯେଉଁ ବଳି ଏବଂ ଯାହାଙ୍କୁ ବିଷ୍ଣୁ ବାମନରୂପରେ ପାତାଳକୁ ଚାପି ଦେଇଥିଲେ, ସେହି ବଳିର ପୁଅ ।

୧୬ । କଟକ—ନଗର । ଶୋଣିତ ପୁର—ବାଲେଶ୍ୱର ଷହରର ପୁରାତନ ନାମ । ବାଲେଶ୍ୱର ନାମଟି ବାଣେଶ୍ୱରର ଅପଭ୍ରଂଶ । ସେଠାରେ ଅଦ୍ୟାପି ଉଷାମେଢ଼ର ସ୍ଥାନ ରହିଅଛି । ଅଗମିତ—ଯେଉଁଠାକୁ ପ୍ରବେଶ କରି ହୁଏ ନାହିଁ ।

ଅମରାବତୀ ତାଙ୍କୁ ନୋହେ ସମ
ବିଶ୍ୱକର୍ମାରେ ସେ ନିର୍ମିତ କ୍ରମ । ୨୭ ।

କାନନ ନନ୍ଦନ ବନୁଁ ଉତ୍ତମ
ଯହିଁ ଷଡ଼ ଋତୁ କରେ ବିଶ୍ରାମ । ୨୮ ।

ଦେବ-କଣ୍ଟକ ସେ ତ୍ରିପୁର ଜଣି
ବଳେ ସମାନ ସେ କାହିଁ ନ ଗଣି । ୨୯ ।

ସ୍ୱର୍ଗେଣ ଅମରରାଜନ ଜଣି
ମହୀମଣ୍ଡଳେ ସେ ନୃପ-ଅରେଣି । ୩୦ ।

ତାହାର ତପେ ତୋଷ ଉମା ଶିବ
ଆଜ୍ଞା ଦେଲେ ତାଙ୍କୁ ଦେବାଧିଦେବ । ୩୧ ।

ଯାବତ ରବି ଶଶୀ ମହୀ ଥିବ
ସହସ୍ରେ ଭୁଜ ତୋହୋର ହୋଇବ । ୩୨ ।

ସନ୍ତୋଷେ ଗଉରୀ ସଙ୍ଗେ ଶଙ୍କର
ପ୍ରତ୍ୟକ୍ଷେ ବିଜୟେ ନବରେ ତାର । ୩୩ ।

ଏକ ଦିବସେ ବୋଲେ ମହାସୁର
ଶୁଣ ଦେବ ତୁମ୍ଭେ ତ୍ରିପୁର-ହର । ୩୪ ।

୩୦—୨ :— ଏ ମର୍ତ୍ତ୍ୟ-ମଣ୍ଡଳେ ନୃପ-ଅରେଣି (ଖ) ।

---

୨୭ । କ୍ରମ — କାରୁକାର୍ଯ୍ୟ । ୩୦ । ଅରେଣି — ଶ୍ରେଷ୍ଠ ।
୩୧ । ଦେବାଧିଦେବ — ଦେବଶ୍ରେଷ୍ଠ ମହାଦେବ । [ ଭଗବତ ଓ ହରିବଂଶ ଦ୍ରଷ୍ଟବ୍ୟ ] ।
୩୪ । ତ୍ରିପୁର-ହର — ତ୍ରିପୁର-ନାଶକ । ସୁନା, ରୂପା ଓ ଲୁହା ନିର୍ମିତ ତିନିପୁର, ସେଠାରେ ମାଳୀ, ସୁମାଳୀ ଓ ବିଦ୍ୟୁନ୍ମାଳୀ :— ଏହି ତିନି ଦୈତ୍ୟ ଉତ୍ପାତ କରୁଥିଲେ । ମହାଦେବ ଶର ପେଷି ସେ ତିନି ପୁରକୁ ଦହି ଦେଇଥିଲେ ।

ସହସ୍ରେ ଭୁଜବଳ ନୋହେ ସହ
ଯୁଦ୍ଧକୁ ତ ମୋତେ ସମାନ ନାହିଁ । ୩୫ ।

ମୋର ସମାନ ଜଣେ ଯୋଦ୍ଧା ଦେଇ
ବଳ ଶାନ୍ତ ମୋର କର ଗୋସାଇଁ । ୩୬ ।

ଶୁଣି ପ୍ରକୋପେ ହର ଆଜ୍ଞା ଦେଲେ
ରଥରୁ ତୋହୋର ଧ୍ୱଜ ଖସିଲେ । ୩୭ ।

ମୋର ସମାନେ ଜଣେ ତୋର ଭୁଲେ
ଯୁଦ୍ଧରେ ତୋତେ ସେ ତୋଷିବ ଭଲେ । ୩୮ ।

ଶୁଣି ବାହୁଡ଼େ ଦଇତ୍ୟ ଦଣ୍ଡଧାରୀ
କେତେଦିନେ କାଳ ସେ ଥାଇ ପୁରର । ୩୯ ।

ତାହାର ଉଷା ନାମେଣ କୁମାରୀ
ରୂପେଣ ରମ୍ଭା ଯେ ନୁହନ୍ତ ସର । ୪୦ ।

ଅନନ୍ଦ କନ୍ଦ ନୀଳଗିରି-ପତ
ଲକ୍ଷ୍ମୀ ସାରଦା ତା ପାରୁଣବର୍ତ୍ତୀ । ୪୧ ।

ତାହାଙ୍କ ଚରଣେ ଶରଣ ମତ
ଶିଶୁ ଶଙ୍କର ଭାବୁଥାଇଁ ନିତ । ୪୨ ।

——:o:——

୩୭ । ଧ୍ୱଜ—ବାନା । ୩୮ । ଭୁଲେ—ସଙ୍ଗରେ । ୪୦ । ରମ୍ଭା—ସ୍ୱର୍ଗର ଅପସରା ।
୪୧ । ଅନନ୍ଦ-କନ୍ଦ—ଆନନ୍ଦର ମୂଳ କାରଣ । ସାରଦା—ସରସ୍ୱତୀ । ଇତି ପ୍ରଥମ ଛନ୍ଦର ଉଷା-ଅଭିଳାଷିଣୀ ଟୀକା ସମାପ୍ତ ।

# ଦ୍ୱିତୀୟ ଛାନ୍ଦ

ରାଗ—ନଳିନୀ ଗଉଡ଼ା

ଏଥୁ ଅନନ୍ତରେ ଶୁଣ ରସିକ ପିହାଣ
ବର୍ଣ୍ଣନ କହିବ କେହ୍ନେ ଊଷା ରୂପ ଗୁଣ । ୧ ।

ଯୁବା-ଜନ-ମନ-ଚୂତ ଚନ୍ଦନ-ସମୀର
ପୁରୁଷ-ହୃଦୟ-ଚନ୍ଦ୍ରମଣି ନିଶାକର । ୨ ।

ଶରଦ-ସମ୍ପୂର୍ଣ୍ଣ-ଅକଳଙ୍କ-ହରିଣାଙ୍କ
ଲପନ ଲାବଣ୍ୟ ଲକ୍ଷ୍ମୀ ଗୃହିଣୀ ଅତଙ୍କ । ୩ ।

ସ୍ମିତ ଭାବ ଗୃହିଣୀ ସେବନ୍ତି ଯହିଁ ହର
ଅହ୍ଲାଦ ଗୁଣ ତେଣୁ ବନ୍ଦେ ନିଶାକର । ୪ ।

ରାଗ—ମଙ୍ଗଳ ମାଳବ (ଖ) ।

---

୧ । ପିହାଣ—ଚତୁର, (ପଟ୍ଟବାନ୍ ଶବ୍ଦର ଅପଭ୍ରଂଶ) ।

୨ । ଯୁବା···ସମୀର—ଯୁବକମାନଙ୍କର ମନ ହେଲା ଆମ୍ବଗଛ, ଊଷାର ରୂପଗୁଣ ହେଲା (ଚନ୍ଦନ) ମଳୟ ପବନ । ମଳୟ ପବନ ବାଜିଲେ ଆମ୍ବଗଛ ଯେପରି ନୂଆ ପତ୍ର ଓ ବଉଳରେ ହସି ଉଠେ, ଊଷାର ରୂପଗୁଣରେ ଯୁବକମାନଙ୍କର ମନ ସେହିପରି ନୂଆ ଭାବ ଓ ପ୍ରେମରେ ହସି ଉଠେ । ପକ୍ଷାନ୍ତରେ, ଯୁବକମାନଙ୍କର ମନକୁ ଊଷାର ରୂପଗୁଣ ଆମ୍ବ, ଚନ୍ଦନ ଓ ମଳୟ ପବନ ପରି ଆନନ୍ଦଦାୟକ ଅଟେ । ପୁରୁଷ···ନିଶାକର—ଚନ୍ଦ୍ରଙ୍କ କିରଣରେ ଚନ୍ଦ୍ରମଣି ତରଳି ଗଲା ପରି ଊଷାର ରୂପଗୁଣରେ ପୁରୁଷର ହୃଦୟ ତରଳି ଯାଉଥିଲା ।

୩ । ଶରଦ···ହରିଣାଙ୍କ—ଶରଦ ପୂର୍ଣ୍ଣିମାର କଳଙ୍କହୀନ ଚନ୍ଦ୍ର ହେଲେ ତାର ଲପନ ଅର୍ଥାତ୍ ମୁଖ ।

୪ । ସ୍ମିତଭାବ—ଊଷାର ମନ୍ଦହାସ ଦେଖି ଚନ୍ଦ୍ର ହାର ମାନିବାରୁ ତାହାର କାନ୍ତି ଫିକା ହୋଇ ଗଲା । ସେବନ୍ତି...ହର—ଶିବଙ୍କୁ ସେବିଲା ପରେ ସେ ଏତେ ଲାବଣ୍ୟ ଲଭିଲା ।

ନିର୍ମଳ ସ୍ୱଭାବ ବହେ ମଦନ ଦର୍ପଣ
ଜଳରୁହ ବହେ ତାର ସୁଗନ୍ଧ ଲାବଣ୍ୟ । ୫ ।
ସୁସ୍ପଷ୍ଟ ନାସିକା-ପୁଟେ ଲୁଲେ ଗଜମୋତି
ସୁଧାବିନ୍ଦୁ ଯେଣେ କି ପୌର୍ଣ୍ଣମୀ-ନିଶାପତି । ୬ ।
କାମକୁ ଛୁଆଇବାକୁ ଲୋଡ଼େ ହେମଗିରି
ଯହୁଁ ସେ କୁଚକୁ ଚାହେଁ ହେଠମାଥ କରି । ୭ ।
କୁଟିଳ କୁନ୍ତଳ କି କୋମଳ ଭୃଙ୍ଗରାଜ
କାମରଥ-ଧ୍ୱଜେ ନୀଳ ପତାକା ବିରାଜ । ୮ ।
ଯୁବା-ଜନ-ମନ-ବନ୍ଦୀ-ମନ୍ଦିର କବରୀ
ଯେନେହେ ଶଶାଙ୍କ ପାଶେ ଯେସନେ ଶର୍ବରୀ । ୯ ।

---

୫ । ଜଳରୁହ—ପଦ୍ମ ।

୬ । ସୁସ୍ପଷ୍ଟ—ସୁନ୍ଦର । ଲୁଲେ—ଦୋହଲୁ ଥାଏ । ନିଶାପତି—ଚନ୍ଦ୍ର ।

୭ । ହେମଗିରି—ମେରୁ ପର୍ବତ । କାମକୁ.....ହେଠମାଥ କରି—ଊଷାର କୁଚ ମେରୁଠାରୁ ଉଚ୍ଚ; ଯହୁଁ ମେରୁ ଲଜ୍ଜାରେ ମୁଣ୍ଡକୁ ନୁଆଁଇ କୁଚକୁ ଚାହେଁ ଓ କୁଚର କାମଭାବ ଜନ୍ମାଇବା ଗୁଣ ତା'ଠାରେ ନ ଥିବା ଦେଖି ସେ କାମକୁ ଛୁଆଇବାକୁ ଅର୍ଥାତ୍ ସେହି କାମଭାବ ଜନ୍ମାଇବା ଗୁଣ ନିଜଠାରେ ଜାତ କରାଇବାକୁ ଇଚ୍ଛା କରେ । ଅନ୍ୟପକ୍ଷରେ ଊଷା ମୁଣ୍ଡ ନୁଆଇଁ ଯେତେବେଳେ ଚାହେଁ, ସେତେବେଳେ କାମକୁ ଛୁଆଇବାକୁ ହେମଗିରି ବା ଦେବଗିରିରୂପ ସ୍ତନକୁ ଲୋଡ଼େ ।

୮ । କୁଟିଳ—କୁଞ୍ଚିତ । କୁନ୍ତଳ—ବାଳ । କାମରଥଧ୍ୱଜ—ମଦନଙ୍କ ରଥର ଅଗ୍ରଭାଗ ଦଣ୍ଡ । କବି ଊଷାକୁ ମଦନଙ୍କ ରଥ, ତାହାର ଶିରକୁ ଧ୍ୱଜ ଓ ବାଳକୁ ନୀଳପତାକା କହି କାମର ଉଦ୍ଦୀପନା ସୂଚନା କରୁଅଛନ୍ତି ।

୯ । କବରୀ—ଜୁଡ଼ା । ଶର୍ବରୀ—ରାତ୍ରି । କବି ଊଷାମୁଖକୁ ଚନ୍ଦ୍ରର ସମାନ ଏବଂ କେଶକୁ ରାତ୍ରିର ସମାନ ବର୍ଣ୍ଣନ କରିଅଛନ୍ତି ।

ମଧ୍ୟେ ଶୋଭେ ନୀଳଘନ-କୁନ୍ତଳ-ଅଳକା
ମଦନ-ମୁକୁରେ କିରୁ ମରକତ-ରେଖା । ୧୦ ।

ଅଧୋଭାଗେ ଅଧର ବିଦ୍ରୁମ-ରେଖା ଆଭା
ତଦୁପରି ଖଞ୍ଜିତ ମୁକୁତା ଦନ୍ତ ଶୋଭା । ୧୧ ।

ଶ୍ରବଣ ଯୁଗଳ ବେଢ଼ି ପାଶ ଅଭିରାମ
ତ୍ରିଭୁବନ-ଜୟ-ପାଶ ଥୋଇଛି କି କାମ ? । ୧୨ ।

ପୁନରପି ଦରତପ ଭଙ୍ଗି ତ ଅନଙ୍ଗ
ଭ୍ରୂଲତା ଗୁଣ ସାଜିଲା କପାଳ ଶାରଙ୍ଗ । ୧୩ ।

ଲୋଚନ ଅମୋଘ ଶର କଜ୍ଜଳ ବିଷାଇ
ତାଟଙ୍କ ଶାଣରେ କି ତା ଘଷୁଛି ବସାଇ । ୧୪ ।

କମ୍ବୁକଣ୍ଠେ ଥୋଇଲା ସପତ ଆଦ୍ୟସ୍ୱର
କୋକିଳ ଶିଖିଲେ ଏଥୁଁ ସୁସ୍ୱର ଗମ୍ଭୀର । ୧୫ ।

୧୫-୧ :—ମୋଦ-ସ୍ୱର (ଖ) ।

---

୧୦ । ନୀଳ-ଘନ — ଅତି କେଳଅ । ଅଳକା — ଚୂର୍ଣ୍ଣକୁନ୍ତଳ । ମରକତ ରେଖା — ନୀଳମଣି ଧାର । ଚୂନ୍‌ଚୂନ୍‌ଆ ବାଳ ଗୁଡ଼ିକ ନୀଳମଣି ଧାର ପରି ଦେଖା ଯାଉଅଛି ।

୧୧ । ବିଦ୍ରୁମରେଖା — ପୋହଳା ଧାର । ଆଭା — ଶୋଭା ।

୧୨ । ତ୍ରିଭୁବନ...କାମ — କନ୍ଦର୍ପ ତିନି ଭୁବନକୁ ଜୟ କରିବା ଲାଗି ଯୋଡ଼ିଏ ପାଶ ବସାଇ ଅଛି କି ?

୧୪ । ଅମୋଘ — ଅବ୍ୟର୍ଥ, ଅଚୁକ । ବିଷାଇ — ବିଷଯୁକ୍ତ କରାଇ । ତାଟଙ୍କ — କର୍ଣ୍ଣଭୂଷଣ । ଏଠାରେ କବି ଲୋଚନକୁ ଶର, କଜ୍ଜଳକୁ ବିଷ ଓ ତାଟଙ୍କକୁ ଶାଣରୂପରେ ବର୍ଣ୍ଣନା କରି ଅଛନ୍ତି ।

୧୫ । କମ୍ବୁ କଣ୍ଠେ — ଶଙ୍ଖ ସଦୃଶ ଗଳାରେ । ସପତ ଆଦ୍ୟସ୍ୱର — ସା, ରି, ଗା, ମା, ପା, ଧା, ନି, ଅର୍ଥାତ୍ ଷଡ୍‌ଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ, ଧୈବତ ଓ ନିଷାଦ ଏହି ସାତୋଟି ସ୍ୱର କାମଦେବ ଯଥାକ୍ରମେ ଉଷାର କଣ୍ଠରେ ଥୋଇଲେ ।

ଶମ୍ଭୁ ଦମ୍ଭ ଯିବ, ଗଣ୍ଡ ଚନ୍ଦ୍ରକ ଦେଖିଲେ
ବନ୍ଧୁ ସାମଗ୍ରୀର କାମ, ପୂର୍ବୁଁ ଭସ୍ମ କଲେ । ୧୬ ।

ସ୍ମରୁଚର ଗଣ୍ଡଯୁଗ ମଦନ ମୁକୁର
ଯୁବାଜନ-ମନ-ବନ୍ଦୀ ଚନ୍ଦ୍ର ତାଙ୍କର । ୧୭ ।

କଳିତ କୋମଳ ବାହୁଲତା ରତା ପାଣି
ଶିରୀଷମାଳ୍ୟରେ କୋକନଦ ଝମ୍ପା ଜାଣି । ୧୮ ।

ମର୍କତ-ବଳୟ ତହିଁ ମଧୁକର ମିଳ
ଲୋହିତ କର-ପଲ୍ଲବ ସୁଷମ ଅଙ୍ଗୁଳି । ୧୯ ।

ବିପୁଳ ସ୍ତନ ପାଣ୍ଡୁ ଉଚ୍ଚ କୁଚ ବେନି
ଅନ୍ୟୋନ୍ୟ ଅନ୍ୟେ ବଢିଲେ ହୃଦୟ ସୀମା ଘେନି ୨୦ ।

ଅବଶେଷ ନ ରଖିଲେ କସ ଚନ୍ଦ୍ର ଏନ୍ତୁ
ଦେଖିଲେ ମାତ୍ରକେ ବୁଦ୍ଧି ସୀମା ଦ୍ୱରେ ଯେନ୍ତୁ । ୨୧ ।

୧୬ — ୨ : — ସାମଗ୍ରୀଙ୍କୁ (ଖ) । ୧୭ ପଦଟି କେବଳ (ଗ) ପୋଥିରୁ ପ୍ରାପ୍ତ । ୧୯ — ୧, ମାଳ (ଖ, ଗ) । ୧୯ — ୨ : — କରଙ୍ଗସମ (ଖ, ଗ) । ୧୯ — ୨ : — ସୁସ୍ପଷ୍ଟ (ଖ, ଗ)।

---

୧୬ । ଶମ୍ଭୁ ଦମ୍ଭ — ଶିବଙ୍କ ଗର୍ବ । ବନ୍ଧୁ…କଲେ — କାମଦେବଙ୍କର ବନ୍ଧୁ ଶତ୍ରୁ ଥିବାର ଜାଣି ପାରି ମହାଦେବ ଅଗରୁ ଭସ୍ମ କରି ତାହାଙ୍କୁ ନାଶ କରିଥିଲେ ।

୧୭ । ଯୁବାଜନ…ତାଙ୍କର — ତାଙ୍କର ଚନ୍ଦ୍ର ଅର୍ଥାତ୍ ପ୍ରତିବିମ୍ବ ଉଷାର ଗାଲରେ ପ୍ରତିଫଳିତ ହେବାରୁ ତହିଁରେ ଯୁବକମାନଙ୍କର ମନ ବନ୍ଦୀ ରହୁଛି ।

୧୮ । କଳିତ—ସୁନ୍ଦର । । ରତା — ରକ୍ତବର୍ଣ୍ଣ । କୋକନଦ — ରକ୍ତପଦ୍ମ ।

୧୯ । ମର୍କତ ବଳୟ — ନୀଳମଣି କଳା । କରପଲ୍ଲବ — ହାତ ତଳ । ସୁଷମ — ସୁନ୍ଦର ।

୨୦ । ବିପୁଳ — ସ୍ଥୂଳ । ପାଣ୍ଡୁ — ଶୁଭ୍ର । ସ୍ତନ — ଲଗାଲଗି । ଅନ୍ୟୋନ୍ୟ ଅନ୍ୟେ… ସୀମା ଘେନି — କୁଚ ଦୁଇଟି ଏପରି ପରସ୍ପର ସୀମା ନେଇ ବଢ଼ିଲେ ଯେ, ଦୁହିଁଙ୍କ ମଧ୍ୟରେ ଫାଙ୍କ ରହିଲା ନାହିଁ ।

ବକ୍ଷସ୍ଥ ଅନ୍ତରେ ମନ ନ ଗମିବା ପାଇଁ
ତେଣୁ କର ମଧ୍ୟରେ ଅନ୍ତର ରଖି ନାହିଁ । ୧୨ ।

ମଞ୍ଜୁ-ସିଂହ ଉପରେ କି ଯଉବନ-କରୀ
ରୋଷେ ଉଠି ବେନ କୁମ୍ଭ ଅଛି କି ଉଭାରି ? । ୧୩ ।

କି ଅବା ତ୍ରିପୁର ଜୟ ମୋହ ରତ୍ନକୋଷ
କନକ କୁମ୍ଭରେ ଭରି ଶମ୍ଭୁରେ ବିଳାସ ? । ୧୪ ।

କସ୍ତୁରୀ-ପଙ୍କରେ କ୍ଷୁଦ୍ର ମରକତ ମୁଦ
ଗୁପତେ ବଢିବ ବାସ ଅଛି କି ଆଚ୍ଛାଦ ? । ୧୫ ।

ଭୁକ୍ଷୋଦରୀ ନମ୍ରନାଭି କାମ ମୋହ ଟୋପ
ଯୁବାଜନ ବନ୍ଧନେ ତ୍ରିବଳି ରଜ୍ଜୁରୂପ । ୧୬ ।

୧୩ — ୨ : — ଉଦ୍ଧ୍ୱ ଯୌବନ୍ୟ କରେ ଉଠିଅଛି ପଦ (ଖ,ଗ) । ୧୪ — ୧ : — ଅଛିକି (କ) । ତ୍ରିପୁର ହର ଜୟ ରତ୍ନକୋଷ (ଖ) । ୧୪ — ୨ : — ସମ୍ଭାର ବିଶେଷ (ଗ) ।

---

୧୩ । ମଞ୍ଜୁ ସିଂହ···ଉଭାରି — ଉଦରର ମଞ୍ଜୁ (ସୁନ୍ଦର) ହେଲା ସିଂହ, ଯୌବନ ହେଲା କରୀ (ହାତୀ), କୁଚ ଦୁଇଟି ହେଲା ଦୁଇଟି କୁମ୍ଭ (କଳସ) ।

୧୪ । ଶମ୍ଭୁରେ — ମହାଦେବଙ୍କ ଦ୍ୱାରା । କି ଅବା···ବିଳାସ — ତ୍ରିପୁର ଜୟକୁ ମୋହିତ କରି ପାଇବା ରତ୍ନଭଣ୍ଡାର ଦୁଇ ସୁନା କଳସ (ଉଦରର କୁଚ) ଭିତରେ ରଖାଯାଇ ଅଛି କି । ଯହିଁରେ ମହାଦେବ କ୍ରୀଡ଼ା କରୁଅଛନ୍ତି । ପକ୍ଷାନ୍ତରରେ, ମହାଦେବ ତ୍ରିପୁରକୁ (ରାକ୍ଷସ ବିଶେଷକୁ) ପରାସ୍ତ କରି ଯେଉଁ ଧନରତ୍ନମାନ ଆଣିଥିଲେ, ସେଗୁଡ଼ିକୁ ଏହି ସୁନା କୁମ୍ଭରେ (କୁଚରେ) ଭର୍ତ୍ତି କରି ତହିଁରେ ବିଳାସ କରୁଅଛନ୍ତି କି ?

୧୫ । କସ୍ତୁରୀ······ଆଚ୍ଛାଦ — କସ୍ତୁରୀ ଲେପରେ ଅର୍ଥାତ୍ ସ୍ତନର ଉପରିସ୍ଥିତ ଗୋଲ ସ୍ଥାନ ବିଶେଷ ଉପରେ ରଖାଯାଇଥିବା ଶ୍ରେଷ୍ଠ ନୀଳମଣି (ମରକତ)ର ମୁଦ୍ରା ଅର୍ଥାତ୍ ଚୂଚୁକକୁ ଲୁଚାଇ ରଖିବା ପାଇଁ ମନୋହର ବସ୍ତ୍ର ଢାଙ୍କା ଯୋଡ଼ାଯାଇ ଅଛି କି ?

୧୬ । ଭୁକ୍ଷୋଦରୀ — କୃଶୋଦରୀ । କାମ ମୋହ ଟୋପ — ମଦନ ମୋହ ଗର୍ବ । ତ୍ରିବଳୀ — ପେଟରେ ଥିବା ତ୍ରିବଳୀରେଖା ।

ଅନଙ୍ଗ ଦହନ କାଳେ ସୁଧାରସ ଢାଳ
ଧୂମଲତା ବାହାର ହୋଇଲା ରୋମାବଳୀ । ୨୭ ।

କିତମ୍ବ ମଦନ ରାଜ୍ୟ ଜୟ ସିଂହାସନ
ପ୍ରଭା ଚର୍ମଦେଶେ କି ଏ ବିବେକ ନାଶନ ? । ୨୮ ।

ବିପରୀତ କନକ କଦଳୀ କଦେ ଜାନୁ
ଯାହା ଅଗ୍ରେ କର ବିଣ ଜିଣିଲା ଅତନୁ । ୨୯ ।

ହରି ହର ଧାତା ଆଦ ପଡ଼ିଲେ ଲୋଚନେ
ଯୁଗ ଯୁଗାନ୍ତରେ ଲୟ ନ ଛାଡ଼ିବେ ମନେ । ୩୦ ।

ସ୍ଥଳ-ସରସିଜ-ଶୋଭା ନିନ୍ଦିତ ଚରଣ
ସୁସ୍ପଷ୍ଟ ଅଙ୍ଗୁଳ-ନଖ ଦିବ୍ୟ ମଣିଗଣ । ୩୧ ।

ରସାଣିଲା ଜମ୍ବୁନଦ ଝଳ ଦେହ ରୂପ
ଗଣ୍ଡିବିରି ନ ଦିଶଇ କାମ ମୋହ ଚୋପ । ୩୨ ।

୨୮ — ୨ ଃ — ପରଭା ଚରମ ଦେଶେ ବିବେକ ନାଶନ (ଖ) । ୩୨ — ୨ ଃ — କାମ ରସ କୂପ (ଗ, ଗଂ) ।

---

୨୭ । ସୁଧାରସ — ଅମୃତ, ଜଳ । ଧୂମଲତା — ଧୂଆଁର ଶିଖା ବା ରେଖା । ଅନଙ୍ଗ··· ରୋମାବଳୀ — ଶିବଙ୍କ ଆଖିର ନିଆଁରେ ମଦନ ଜଳି ଯାଉଥିବା କାଳରେ ଅମୃତଜଳ ସିଞ୍ଚି ଦେବାରୁ ଯେଉଁ ଧୂଆଁ ଶିଖା ଉଠିଥିଲା ତାହା ଉଷାର ଉଦରରେ ଲୋମ ରୂପରେ ଦେଖା ଦେଇଛି କି ?

୨୮ । ପ୍ରଭା···ନାଶନ — ଉଷାର ପଟ୍ଟପଟରେ ଶୋଭା (ପ୍ରଭା — ମଣ୍ଡଳାକାର ଜ୍ୟୋତି) ଯୁବକମାନଙ୍କର ବିବେକ ବୁଦ୍ଧିକୁ ନାଶ କରୁଅଛି ।

୨୯ । ବିପରୀତ — ଓଲଟା ରଖା ହୋଇଥିବା । ଅତନୁ — କନ୍ଦର୍ପ ।

୩୦ । ହରି — କୃଷ୍ଣ (ବିଶ୍ୱର ପାଳକ) । ହର — ଶିବ (ବିଶ୍ୱର ବିନାଶ କର୍ତ୍ତା) । ଧାତା — ବ୍ରହ୍ମା (ସୃଷ୍ଟି କର୍ତ୍ତା) । ଯୁଗଯୁଗାନ୍ତର — ବହୁଯୁଗ ପର୍ଯ୍ୟନ୍ତ । ଲୟ — ଧ୍ୟାନ ।

୩୨ । ରସାଣିଲା — ଉଜ୍ଜ୍ୱଳ ହୋଇଥିବା । ଜମ୍ବୁନଦ — ଭଲ ସୁନା ।

ଗନ୍ଧର୍ବ କିନ୍ନର ଯକ୍ଷ ଉତ୍ତମ ନାୟିକା
ଦାସୀପଣେ ନ ଛାଡ଼ଇ ରାମା ରୂପରେଖା । ୩୩ ।

ବଚନ କହିଲ ଯାହା ଗୀତକର୍ମ ହେନ
ଯେହାଙ୍କୁଁ କୋଟିଏ ଗୁଣ ଅଧିକ କାମିନୀ । ୩୪ ।

ବାଣାଘରେ ଏହା ଲୋକେ ରହିଲେ କି ହର
ସପତଣୀଭୟେ ସଙ୍ଗେ ଉମା ପରଶ୍ୱର । ୩୫ ।

ସ୍ୱରପୁରେ ଦୁର୍ଲ୍ଲଭ ଯେ ବାସ ଆଭରଣ
ଏହାଙ୍କୁ ସୁଲଭ ସେହୁ ଅମୂଲ୍ୟ ଭୂଷଣ । ୩୬ ।

ସହସ୍ର ଯୁବତୀ ନିତ୍ୟ ସେବେ ମନ ଜାଣି
ଚନ୍ଦ୍ରଶାଳା ପୁରେ ନାନା ବିନୋଦ ତରୁଣୀ । ୩୭ ।

ନୃତ୍ୟ ଗୀତ ବାଦ୍ୟ କାବ୍ୟ ରସରେ କୁଶଳ
ବିବିଧ ବିଳାସ ରସେ ବଞ୍ଚଇ ସେ କାଳ । ୩୮ ।

ଅମିତ ଲାବଣ୍ୟ ଘନ ଶୋଭା ଗୋପୀନାଥ
କୋଟି କାମ-ନିନ୍ଦିତ ମୋହନ ବେଣୁହସ୍ତ । ୩୯ ।

ବନମାଳୀ ଶରଣ ଶଙ୍କର କହେ ରସ
ହେଲା ଛାନ୍ଦ ଶେଷ ହୋଏ ଉଷା-ଅଭିଳାଷ । ୪୦ ।

୩୬-୨ :— ଦୁର୍ଲ୍ଲଭ କେଉଁ -(ଖ) ।

---

୩୩ । ରୂପରେଖା — ରୂପଶୋଭା । ୩୪ । ଗୀତ କର୍ମ — ଗୀତ ରଚନା ଯୋଗ୍ୟ ।
୩୭ । ବିନୋଦ ତରୁଣୀ — କ୍ରୀଡ଼ା ଯୁବତୀ । ୩୮ । ବିଳାସ ରସେ — କ୍ରୀଡ଼ା କୌତୁକରେ ।
୩୯ । ଅମିତ — ବହୁ । ଇତି ଦ୍ୱିତୀୟ ଛାନ୍ଦର ଉଷାଭିଳାଷିନୀ ଟୀକା ସମାପ୍ତ ।

# ତୃତୀୟ ଛାନ୍ଦ

ଦଶ—ମଙ୍ଗଳ ଧନାଶ୍ରୀ

କୁସୁମ ସମୟ କାଳେ ଅବଳାମଣି
ପୁଷ୍ପଭେଦ ପାଇଲା ସେ ରସିକା ରମଣୀ । ୧ ।

ମଦନ ବିଜୟ ତାର ହୃଦୟ ଦେଶେ
ଅଙ୍ଗଶୋଭା ଯେସନ କାନନ ମଧୁମାସେ । ୨ ।

ମନକୁ ଭେଦଇ ତାର ବିଳାସ ରସ
ସଧୀରେ କହନ୍ତେ ନାସା ଫୁଲ୍ଲ ମନ୍ଦହାସ । ୩ ।

ତରଳ କୁଟିଳ ଭଙ୍ଗେ ଲୋଚନ ଢାଳ
ପବନ କଂପିତ କି ଏ ପୁଷ୍ପେ ଭୃଙ୍ଗମାଳ । ୪ ।

ମନ-କରିବର ତାର ହୋଇଲା ମତ୍ତ
ସଧୀରେ ଗମନ ହୋଏ ଲୋଚନ ଘୂର୍ଣ୍ଣିତ । ୫ ।

ସାହିତ୍ୟ ପଢ଼ଇ କଣ୍ଠେ ସଖୀଙ୍କ ମେଳେ
ଉତ୍ସୁକ ହୁଅଇ ଶୁଣି ରତିରସ ଭୋଳେ । ୬ ।

ସମ୍ଭାଳି ନ ପାରି ମନ ଉଦ୍ଭବ ହୋଇ
ପଶ୍ଚିରଲେ ବଞ୍ଚାଇ ମନରେ ଲାଜ ପାଇ । ୭ ।

୧—୨ :—ରତୁ ଭେଦ (ଗ) । ୪—୨ :—ପବନେ କଂପିତ ପୁଷ୍ପେ କି ଏ ଭୃଙ୍ଗାଳି (ଗ) ।
୨—୨ :—ଭଣ୍ଡନ (ଖ) ।

୧ । ପୁଷ୍ପଭେଦ ପାଇଲା—ରଜସ୍ୱଳା ହେଲା । ୫ । ଘୂର୍ଣ୍ଣିତ—ଅଳସପୂର୍ଣ୍ଣ ।
୭ କଣ୍ଠେ—କପଟରେ ।

ଶିଶୁ ଖେଳରସେ ତାର ନ ରସେ ମତି
ଭୂଷଣେ ଭୂଷିତ ରତ୍ନ-କଳସେ ଯୁବତି । ୮ ।

କୁଷ୍ମାଣ୍ଡ ନାମେଣ ମନ୍ତ୍ରୀ, ଦୁହିତା ତାର
ଚନ୍ଦ୍ରଲେଖା ନାମ ତାର ମହିମା ଅପାର । ୯ ।

ଜାଣଇ ସକଳ ଶାସ୍ତ୍ର ଯୋଗିନୀ ମତ
ବିଶ୍ୱାସ ପୀରତି ସେ ଉଷାକୁ ଉପଗତ । ୧୦ ।

ହାସରସ କଉତୁକେ ହରଇ ମତି
ଏକଦିନ ତାର ସଙ୍ଗେ ସୁବେଶ ଯୁବତୀ । ୧୧ ।

ଉପବନେ ପରବେଶ ରମଣୀମଣି
ମନସିଜ ରଥବର ଶୋଭା ତାର ଜାଣି । ୧୨ ।

ବେଳାରେ ବସନ୍ତଋତୁ ମଧୁସମୟେ
ଦେଖିଲା ଅବୋଧ ବାଳା ବନ ରସୋଦୟେ । ୧୩ ।

ପୁଷ୍ପ ମକରନ୍ଦ ଗନ୍ଧେ ମନ୍ଦ ମରୁତ
କମ୍ପାଇ ଲୋଚନ ମନ କଣ୍ଟଲମ୍ବ ମତ । ୧୪ ।

ତରୁଲତା ମଳୟଜ ସଙ୍କେତ ପାଇ
କୁସୁମ କୋରକ ସ୍ନେହେ ପ୍ରକଟିଲେ ତହିଁ । ୧୫

୮—୧ : —ନ ରହେ-(ଷ) । ନ ବଳେ (ଗ) । ୧୩-୧ —ମଉ-(ଗ) ।

---

୧୦ । ଯୋଗିନୀ—ଭୂତ ଭବିଷ୍ୟତ ଜାଣିବା ସ୍ତ୍ରୀ ବା ଯୋଗବଳରେ ସମସ୍ତ ବିଷୟ ଜାଣିବା ସ୍ତ୍ରୀ । ଉପଗତ—ନିକଟସ୍ଥିତ ଅର୍ଥାତ୍ ସବୁବେଳେ ପାଖରେ ଥିବା ।

୧୨ । ମନସିଜ—କନ୍ଦର୍ପ । ରଥବର—ରଥ । ୧୪ । ପୁଷ୍ପ ମକରନ୍ଦ—ଫୁଲ ମଧୁ ।

୧୫ । ମଳୟଜ—ମଳୟ ପର୍ବତରୁ ଜାତ ଦକ୍ଷିଣ ପବନ ।

ବିକାଶି ବାସନ୍ତୀ-ମଧୁ ସେବନେଚ୍ଛ ବଶେ
ଚୁମ୍ବନ ଲାଳସେ ମିଳେ ଭୃଙ୍ଗଅନା ପାଶେ ।୧୬।

ନଆଳୀ ଲଳିତ ବାହୁ ନବଡ଼ କୋଳେ
ପୁଲକିତ ଚୂତ କି ଏ ମଞ୍ଜରୀ ମୁକୁଳେ ।୧୭।

କାମ ଅର୍ଦ୍ଧଚନ୍ଦ୍ର ବାଣ ପାଟଳୀ କି ଏ
ଦେଖନ୍ତା ତନୁ ବିଦାରି ସୁରଙ୍ଗ ପ୍ରକାଶେ ।୧୮।

ଯେବଣ କେତକୀ ନାମ ମାଧବେ ମୋହି
କାମ କୁନ୍ତ ମତ କେ ତା ଦେଖି ପାରୁ ସହି ।୧୯।

ମଧୁପ ମକ୍ଷୀ ଉପରେ ମଧୁର ବାଣୀ
ମଦନ ବିଜୟ କାଳେ ଶଙ୍ଖନାଦ ଜାଣି ।୨୦।

ବିବିଧ କୁସୁମଚୟ ବିକାଶ ଦେଖି
ଉତ୍ପଳ ପ୍ରାୟିକ ଚକ୍ଷୁ ନ ପାରେ ଉପେକ୍ଷି ।୨୧।

ମଳୟ ଶମ୍ବଳ ମତ ଶୋଭି ସେ ବନ
ଅଶୋକ କରାଇ ଶୋକ ବିଯୋଗୀର ମନ ।୨୨।

ଚେତ ଚେତ ଜନେ ଗୃହୁଁ ଚୂତ ମୁକୁଳ
ଯୁବାଜନେ ଡ଼ାକ କି ଏ ଭାଷଇ କୋକିଳ ।୨୩।

୨୧—୧ : —ବିକଚ (ଖ)। ୨୧—୨ : —ପଦ୍ମେ (ଗ)।

---

୧୬ । ମଧୁ—ବସନ୍ତକାଳ । ବାସନ୍ତୀ—ପୁଷ୍ପ ବିଶେଷ ।

୧୮ । ପାଟଳୀ—ଗୋଟିଏ ଫୁଲର ନାମ, ଏହା ଦେଖିବାକୁ ନାଲି । ଦେଖନ୍ତା……… ପ୍ରକାଶେ—ଦେଖଣାହାରଙ୍କ ଦେହ (ତନୁ) ବିଦାରଣ କରୁଥିବାରୁ ରକ୍ତ ଲାଗି ସୁରଙ୍ଗ (ଅତ୍ୟନ୍ତ ଲାଲ) ଦେଖା ଯାଉଅଛି ।

୧୯ । କୁନ୍ତ—ଅସ୍ତ୍ର ବିଶେଷ । ୨୧ । ଉତ୍ପଳ—ଭଅଁର । ୨୨ । ମଳୟ-ଶମ୍ବଳ-ମଳୟ ପର୍ବତ ।

ଚନ୍ଦନ ତରୁକୁ ବେଢ଼ି ଲବଙ୍ଗ-ଲତା
କଣଲମ୍ବ ରଙ୍ଗେ କ ଯେ ହୋଏ ଉନମତ୍ତା । ୨୪ ।

କନକ ବେଦିକା ତହିଁ ରତନ ଶୋଭା
ରମଣୀ ରତନ ଭୂଷା ତହିଁ ହୋଏ ଉଭା । ୨୫ ।

ସ୍ଥିହିଁ ଦୀର୍ଘିକା ତଟେ ସ୍ଫଟିକ ଖଣ୍ଡେ
ଜମ୍ବୁନଦ-ପାବଚ୍ଛେ ମାଣିକ୍ୟ ରଙ୍ଗ ଖଣ୍ଡେ । ୨୬ ।

ମାନସରୋବର ତେଜି ମରାଳମାନ
କ୍ରୀଡ଼ା କରୁଛନ୍ତି ତହିଁ ମାତନ୍ତେ ମଦନ । ୨୭ ।

ଉଠନ୍ତି ବୁଡ଼ନ୍ତି ତହିଁ ତରଙ୍ଗ ରଙ୍ଗେ
ଚକ୍ରବାକ ରଥ ରସ ଚକ୍ରବାକୀ ସଙ୍ଗେ । ୨୮ ।

ପିକ-ମୂକ ହତ ଯେଣୁ ବିକାଶେ ତରୁ
ଯୁବାଜନ ଅନୁରାଗ କେ କହି ତ ପାରୁ । ୨୯ ।

ଅକଳଙ୍କ-କଳାନିଧି-ବଦନୀ ବାଳା
ବନ ଦେଖି ପୀଡ଼ିଲା ମଦନ ଶର ଜ୍ୱାଳା । ୩୦ ।

୨୪-୨ :—ଅନୁରାଗ (ଗ) । ୨୬-୨ :—ରତ୍ନେ (ଗ) । ୨୮-୧ :—ଯେଣେ (ଗ) କରେ (ଗ) । ୨୯-୧ :—ଚୂତ ମୁକୁଳିତ (ଗ) ।

---

୨୪ । କଣଲମ୍ବ – କଅଁଳିଆ ପତର ।

୨୬ । ଦୀର୍ଘିକା—ବଡ଼ ପୋଖରୀ । ଖଣ୍ଡେ—ଖଞ୍ଜାଯାଇଥିବା । ପାବଚ୍ଛ—ପାହାଚ ।

୨୭ । ମାନସରୋବର—ତିବ୍ବତ୍ ପ୍ରଦେଶରେ ଥିବା ସୁନାମ ପ୍ରସିଦ୍ଧ ହ୍ରଦ । ମରାଳ—ହଂସ ।

୨୯ । ପିକ-ମୂକ ହତ—କୋକିଳର କଣ୍ଠ ତୋଷ ନଷ୍ଟ ହେବା ।

୩୦ । ଅକଳଙ୍କ-କଳାନିଧି-ବଦନୀ—ଶଶା ଚିହ୍ନ ନ ଥିବା ଚନ୍ଦ୍ର ପରି ସୁନ୍ଦର ମୁଖ ଯାହାର

ନାଗେଶ୍ୱର କଢ଼ି କାମ-ହାବୋଡ଼ ବାନ୍ଧେ
ପୁଣି ଭୃଙ୍ଗ-ଗୁଣେ ଚୂତ-ମୁକୁଳ-ନାରାଚେ । ୩୧ ।

କୋକିଳ ବଚନେ ତାହା ବଖାଣଇ କାମ
ତେବଦନ୍ତେ ପ୍ରକଟି ହୁଅ କଣ୍ଠି ହୋଏ କ୍ଷାମ । ୩୨ ।

ଚଞ୍ଚଳ କୁରଙ୍ଗୀ କି ସେ ଇଙ୍ଗିତ-ଶରେ
କର୍ଷିଲା କରଭ-ଉରୁ ମଦନ କାତରେ । ୩୩ ।

ଅଧର ଶୁଖିଲା ତାର ପୁଲକେ ଗଣ୍ଡ
ରୁନ୍ଧିଲା କୋକିଳ ବାଣୀ ଜାଡ଼ ବାହେ ତୁଣ୍ଡ । ୩୪ ।

ଗମନ ଶ୍ରମ କପଟେ ଅଳସେ ବସେ
କୋଳେ ଧର ଚନ୍ଦ୍ରଲେଖା କହଇ ବିଶ୍ୱାସେ । ୩୫ ।

୩୨ ୨—ପ୍ରକୃ (ଗ) । ୩୫-୧ :—ଧରେ ସେ (କ) ।

---

୩୧ । ହାବୋଡ଼—ବାଣ ବିଶେଷ । ଭୃଙ୍ଗ-ଗୁଣେ—ଭଅଁରରୂପ ଧନୁରେ ଲଗିଥିବା ଦଉଡ଼ି । ଚୂତ-ମୁକୁଳ-ନାରାଚେ—ଅମ୍ବ ବଉଳରୂପ ଶରରେ ।

୩୨ । ବଖାଣି—ବିଶେଷ ବର୍ଣ୍ଣନା କରଇ । କ୍ଷାମ (କ୍ଷାମ ଶବ୍ଦଜ)—କ୍ଷୀଣ । କବି ଏଠାରେ ଭଅଁରମାନଙ୍କୁ ଧନୁରେ ବନ୍ଧା ହୋଇଥିବା ଦଉଡ଼ି, ଚୂତ ମୁକୁଳକୁ ଶର ଏବଂ କୋକିଳ ଶବ୍ଦକୁ ବାଣ ବୋଲି ବର୍ଣ୍ଣନା କରିଅଛନ୍ତି ।

୩୩ । କରଭ-ଉରୁ—ହାତର ମଣିବନ୍ଧ ବା ବନାଗଣ୍ଠି ଠାରୁ କାଣି ଅଙ୍ଗୁଠି ପର୍ଯ୍ୟନ୍ତ ଅଂଶକୁ କରଭ କହନ୍ତି । ତାହା ପରି ଜଙ୍ଘାର ଜଦନ ବା ଜଙ୍ଘ ହୋଇଅଛି । ଇଙ୍ଗିତ··· କାତରେ—ପୂର୍ବରୁ କୁହା ଯାଇଥିବା ଅମ୍ବ ବଉଳରୂପ ସୂଚିତ ବାଣରେ କାମ ପୀଡ଼ାରେ ଅଭିଭୂତ ହୋଇ ଥିଲା ।

୩୪ । ରୁନ୍ଧିଲା—ରୁଦ୍ଧ ହେଲା (ବନ୍ଦ ହେଲା) । ବାହେ—ବାନ୍ଧେ ।

୩୫ । ଗମନ ଶ୍ରମ କପଟେ—ପଥ ଚାଲି ନ ପାରିବାର ଛଳନା କରି ।

ପଙ୍କାର ସେଚନ ପୁଷ୍ପ ବର୍ଷଣି ବାୟେ
କୁରୁବେଳ-ଭ୍ରମର ମଧୁରେ କେ ପକାଏ । ୩୬ ।

ଉଠିଲା ସୁମୁଖୀ ଧରି ସଜନୀ କର
ସହି ନ ପାରିଲା ଯେଣୁ ମଦନ-ବିଧୁର । ୩୭ ।

ନଜପୁରେ ମିଳ ବୋଲେ ସଜନି ! ଶୁଣ
ତୋହାପୁରେ ଥୋଅ ଏ ପଞ୍ଜରୀ ପିକଗଣ । ୩୮ ।

ନୀଳବାସେ ଆଚ୍ଛାଦ ମୋ ସଉଧବାସ
ହିମକର କିରଣ ଏ କରଇ ପ୍ରକାଶ । ୩୯ ।

କିସ ବିପରୀତ ସଖି ! କରିବି କିସ
ପୂରୁବ ପୀରତି ଏବେ ହୋଇଲା ତ ବିଷ । ୪୦ ।

ପଲଙ୍କେ ଶୁଇଲା ସମା ଏତେକ କହି
ଉନ୍ନିଦ୍ରେ ରଜନୀ ନେଲା ଚେତନା ହରାଇ । ୪୧ ।

ନିଶି ଶେଷ ଚକ୍ରବାକୀ ଆନନ୍ଦ ଶୁଣି
ଈଷିତ ବିକାଶ ହୋଏ ଜଳେଣ ନଳିନୀ । ୪୨ ।

୩୬-୧ :—କେ ଭୁଞ୍ଜାରେ (ଖ) । ୩୭-୨ :—ସହିଁ (ଖ) । ଅବୋଧ (ଖ, ଗ) ।
୩୮-୧ :—ପଣି (ଖ, ଗ) ୩୮-୨ :—ଶୁକ (ଛ) ।

---

୩୬ । ପଙ୍କାର—ସୁବାସିତ ଜଳ । ସେଚନ—ଛିଞ୍ଚିବା । ମଧୁରେ—ଧିରେ ।

୩୭ । ମଦନ-ବିଧୁର—କାମପୀଡ଼ା ।

୩୯ । ସୌଧବାସ—ଚୂନବୋଳା କୋଠାଘର । ହିମକର—ଚନ୍ଦ୍ର । କାମଙ୍କର ଉଦ୍ଦୀପକ ଚନ୍ଦ୍ର କିରଣ ପୀଡ଼ା ଦିଏ; ଉକ୍ତ ଉଷା ଚନ୍ଦ୍ର କିରଣରୂପ ଶୁଭ୍ର ଚୂନବୋଳା କୋଠା ଘରକୁ ନୀଳବସ୍ତ୍ରଦ୍ୱାରା ଆଚ୍ଛାଦନ କରିବାକୁ ଆଦେଶ ଦେଲ ।

୪୨ । ଚକ୍ରବାକୀ—ଚକୋରୀ । ଈଷିତ—ଅଳ୍ପ ।

ନିଶା ଗଗନେ ଶଶୀ ଯେମନ୍ତ ଚରମ-ଗିରି
କୁମୁଦ ମୁଦ୍ରିତ ଗୃହେଁ ଆକୁଳ ଚକୋରୀ । ୪୩ ।

ଅଭିସାରୀ ନନ୍ଦା କରେ କୁକ୍କୁଟ ବାଣୀ
ପରବାସୀ ରମଣୀ ଅବଧି ରେଖା ଗଣି । ୪୪ ।

ବିଯୋଗୀ ଧ୍ୟାନ ସଂଯୋଗେ ପୂର୍ବାଇ ନିଶି
ଜାଗମେ ବସିଲା କରେ ଚିତ୍ରପଟ ମସୀ । ୪୫ ।

ରଜନୀ-ଉନ୍ନିଦ୍ର କାମୀ ଶଯ୍ୟନ କରେ
ପତିଅଙ୍ଗ ପ୍ରବୋଧିଲା ଶଯ୍ୟନ ଅନ୍ତରେ । ୪୬ ।

ସୁରତ ସଙ୍କେତ କାନ୍ତ ହୃଦରେ ଦେଖି
ଖଣ୍ଡିତା ଯୁବତୀ ରୋଷ ଦୋଷ ଉପଲକ୍ଷି । ୪୭ ।

ପଦ୍ମିନୀ କମ୍ପଇ ବାଟେ ଭ୍ରମର ଗୃହେଁ
କୁମୁଦନୀ ସଙ୍ଗ କି ଏ ପ୍ରକୋପ ସେ ହୋଇ । ୪୮ ।

୪୬-୨ :—ପତି ସଙ୍ଗ ପ୍ରବୋଧିଲା ଶଯ୍ୟନ ଅନ୍ତରେ (ଖ) । ୪୭-୨ :—ଉପେକ୍ଷି (କ,ଗ) ।
୪୮-୨ :—ନିଶି (ଖ) ।

---

୪୩ । ଚରମ ଗିରି—ଅସ୍ତପର୍ବତ । ଚକୋରୀ—ଚନ୍ଦ୍ରକିରଣ ପାନକାରୀ ପକ୍ଷୀ ବିଶେଷ । କଇଁ ବୁଜି ହୋଇ ଯିବା ଦେଖି ଚକୋରୀ ଚନ୍ଦ୍ରଙ୍କ ଅଭାବ ମନେ କରି ଦୁଃଖିତ ହେଲା ।

୪୪ । ଅଭିସାରୀ—ଯେଉଁ ନାରୀ ରତି ଆଶାରେ ପ୍ରିୟ ସହିତ ମିଳିତ ହେବାପାଇଁ ସଙ୍କେତ ସ୍ଥାନକୁ ଯାଏ । ଅବଧି —କଣ୍ଟସମୟ (ପତିଙ୍କ ଫେରି ଆସିବା ସମୟ) ରେଖା—ଦାଗରେଖା ।

୪୫ । ବିଯୋଗୀ—ବିରହିଣୀ ସ୍ତ୍ରୀ । ଜାଗମେ—ଜାଗ୍ରତ୍ବେଳାରେ । ମସୀ—କାଳି ।

୪୬ । କାମୀ—କାମିନୀ ।

୪୭ । ଖଣ୍ଡିତା—ଯେଉଁ ନାରୀ ନିଜ ପୁରୁଷଠାରେ ଅନ୍ୟ ସ୍ତ୍ରୀ ସହ ରତ ଚିହ୍ନାଦ ଦେଖି ମାନ କରେ ।

ପ୍ରାଚୀ ଅନୁରାଗୀ ହୋଏ ରବିଙ୍କ ଦେଖି
ଅଭିସାରୀ ନଶି କ ସେ ମାନଙ୍କୁ ଉପେକ୍ଷି । ୪୯ ।

ପ୍ରଦାପ ପାଣ୍ଡୁର ପ୍ରାଚୀ ସୁରଙ୍ଗ ବଦଣେ
ନାନା ପକ୍ଷୀ କୋଳାହଳ ଉଚ୍ଚେ ପିକ ଘୋଷେ । ୫୦ ।

ସଧୀର ପବନ ଆସେ କୁସୁମ ବନୁ
ପଲଙ୍କୁ ଉଠୁର ଉଷା ଉଲ୍ଲସିତ ତନୁ । ୫୧ ।

ବନମାଳି କଳାନିଧି—ବଦନ ଧାନେ
ତିନ ଛାନ୍ଦ ଶେଷ ଶିଶୁ ଶଙ୍କର ବଖାଣେ । ୫୨ ।



୫୦-୨ :—ପୁଲକିତ,-(ଖ), ଅଳସ-(ଗ) ।

---

୪୯ । ପ୍ରାଚୀ—ପୂର୍ବଦିଗ । ଅନୁରାଗୀ—ସ୍ନେହୀ । ଅଭିସାରୀ ନଶି—ଅଭିସାରୀ ନାୟିକା ରୂପ ରାତ୍ରି । ମାନ—ଅଭିମାନ । ଉପେକ୍ଷି—ଛାଡ଼ି ।

୫୦ । ସୁରଙ୍ଗ—ଉଜ୍ଜ୍ୱଳ ଲାଲ । ଘୋଷେ—ଶବ୍ଦ କରେ । ୫୧ । କଳାନିଧି—ଚନ୍ଦ୍ର ।

ଇତି ତୃତୀୟ ଛାନ୍ଦର ଉଷା-ଉଲ୍ଲାସିନୀ ଟୀକା ସମାପ୍ତ ।

# ଚତୁର୍ଥ ଛାନ୍ଦ

ବଶ—ମଙ୍ଗଳ ଗୁର୍ଜରୀ ।

(ସଙ୍ଗମ ଭଅଁରି ବାଣୀରେ ଗାଇବ)

ଅରୁଣ ଉଦୟ ହୋଏ ରଜନୀ ଶେଷେ
ବିଯୋଗୀ ଜନଙ୍କୁ କି ଏ କାମ-ହୁତାଶେ । ୧ ।

ହିମକର ତାପେ ଯେହ୍ନେ ବିଯୋଗୀ ଅଙ୍ଗ
ସେ କାହିଁ ସହିବ ରବି ଉଦୟ ସଙ୍ଗ । ୨ ।

ମଦନ-ବାଉଲା ଉଷା ନବ ବିରହୀ
ଗତ ଅନୁଭବ ନାହିଁ, ନ ପାରେ ସହି । ୩ ।

ମଦନ-ଅନଳ ଯହିଁ ଅନ୍ତରେ ଜଳେ
ଉତ୍କୋଳ ମନ୍ଦ ମଳୟ ସମୀରେ ଲୁଳେ । ୪ ।

କୋକିଳ ଭୃଙ୍ଗ ବଚନ ଧୃତ ପର୍ଯ୍ୟେ
ଶୀତ ଉପଚାର ତଥି ତୃଣ ସଞ୍ଚୟେ । ୫ ।

ଷଣେ କମ୍ପେ ଷଣେ ସ୍ୱେଦ ଝାଙ୍କୋରେ ଲୋମ
ବିଷୟ ବିଳାସ ରସ ଯେସନେ ଯମ । ୬ ।

୪-୧ :—ଗାର (ଖ) ୬-୧ :—ସୁଲକେ (ଗ) । ୬-୨ :—ବେଶ (ଗ) ।

---

୧ । ଅରୁଣ—ବାଳସୂର୍ଯ୍ୟ । ୪ । ଉତ୍କୋଳ—ଶୀତଶୀଳ । ଲୁଳେ—ଗଡ଼ଇ ।

୫ । କୋକିଳ···ସଞ୍ଚୟେ—ତିଥି ଓ ଘାସ ଇତ୍ୟାଦି ଯୋଗେ ନିଆଁ ଯେପରି ଜଳେ, କୋକିଳ ରବ, ଭଅଁରର ଗୁଣୁ ଗୁଣୁ ଗୀତ, ଏବଂ ଅନ୍ୟାନ୍ୟ ଶୀତକାରକ ଦ୍ରବ୍ୟରେ କାମାଗ୍ନି ସେହିପରି ଜଳୁଛି ।

ଝୁରି ଝୁରି କ୍ଷୀଣ ତନୁ ଲାବଣ୍ୟ ଶେଷ
ତେଜିଲା ଭୋଜନ ନିଦ୍ରା ବିବିଧ ରସ । ୭ ।

ଝୀନ ବାସ ବିଷ ଘସ ନ ବନ୍ଧେ ଦ୍ୱାସ୍ତ
ରତ୍ନମୟ ପୁର ମଣେ ମଦନ-କାରା । ୮ ।

ଦିବସ ନିମିଷ ଯୁଗ, ଅଶେଷ ନିଶି
ଏକାନ୍ତ ଠାବରେ ରାମା ଝୁରଇ ବସି । ୯ ।

ଏକମାତ୍ର ଚିତ୍ରଲେଖା କଣ୍ଠରେ ଥାଇ
ଗୁପତ ବେଦନା ତାର ନ ଜାଣେ କେହି । ୧୦ ।

ଏମନ୍ତ ପ୍ରକାରେ ଗଲା କେତେକ ଦିନ
ଝିଙ୍କାରି ଶବଦେ ବହେ ଝଞ୍ଜା ପବନ । ୧୧ ।

ପ୍ରଚଣ୍ଡ ଚଣ୍ଡ-କିରଣ ଗଗନେ ଘୋଟେ
ବନଜନ୍ତୁ ଲୁଚେ କୁଞ୍ଜ ବାନୀର ତଟେ । ୧୨ ।

ଚନ୍ଦନ ଭୂଷିତ ଦେଖି ଯୁବତୀ ଲୁଚେ
ନିଗମ ଦେଖିଣ ତହିଁ ମଦନ ଲୁଚେ । ୧୩ ।

୧୩-୬ :—ନରେନ୍ଦ୍ରି (ଗ) ।

---

୮ । ଝୀନ ବାସ—ପତଳା ଶାଢ଼ୀ । ଦ୍ୱାସ୍ତ—ଦ୍ୱାର । କାରା—କାରାଘର ।

୯ । ଦିବସ ଯୁଗ—ଦିବସର ନିମିଷକୁ (ଆଖି ପିଛୁଳା ପକାଇବାକୁ ଯେତେବେଳ ଲାଗେ) ଯୁଗ ପରି ମଣିଲା ।

୧୦ । ଚିତ୍ରଲେଖା—ବାଣାସୁରଙ୍କ ମନ୍ତ୍ରୀ କୁମ୍ଭାଣ୍ଡଙ୍କ କନ୍ୟା ଏବଂ ଉଷାର ପ୍ରିୟସଖୀ । ସେ ଦୈବ ବିଦ୍ୟା ଓ ଯୋଗ ବିଦ୍ୟାରେ ପ୍ରବୀଣା ।

୧୧ । ଝିଙ୍କାରି—ଶବ୍ଦ ବିଶେଷ । ୧୨ । କୁଞ୍ଜ ବାନୀର ତଟେ—ବେତ କୁଞ୍ଜରେ ।

୧୩ । ନିଗମ—ନିର୍ଜ୍ଜନ ବା ଏକାନ୍ତ ସ୍ଥାନ ।

ରବି ଯେସନେ ମେଘେ ଥାଇ ଶୁଖାଇ ସର
ବିରହୀ ହୃଦୟ ଦହେ ତେସନେ ମାର । ୧୪ ।

ଜାଣି ଅବଲମ୍ବ ହୋଏ ସକଳ ଜନେ
ତରୁ ବିରହଣୀ ଯେସନେ କାନ୍ତ ଦର୍ଶନେ । ୧୫ ।

ବିପିନ-ଅନଳ ଗିରି ଶିଖରେ ଦଶେ
ବିଯୋଗୀ ହୃଦୟ ଦହେ କାମ-ହୁତାଶେ । ୧୬ ।

କଶାନ୍ତଗମନା ସ୍ୱମା ନରେନ୍ଦ୍ର ସୁତା
ଲୋତକ ଜଳେ ବଢ଼ାଇ ବିରହ-ଲତା । ୧୭ ।

ନିତ୍ୟକର୍ମ ପାସୋରିଲା କମଳମୁଖୀ
ଉତ୍ସୁକ ଭାବେଣ ବନେ ଗୃହ ଉପେକ୍ଷି । ୧୮ ।

ଉପବନ ସରୋବର ସନ୍ନିଧେ ମିଳ
ଉମା ଶିବ କରେ ତହିଁ ସଲିଲ କେଳ । ୧୯ ।

ଦେବୀମାନେ ଧରନ୍ତି କୁସୁମ-ଛତ୍ର
କୁସୁମ ଅଲଟ ଧରି କେହୁ ବିଞ୍ଚନ୍ତି । ୨୦ ।

ପରିବାରୀ ଦେବୀ କେହୁ ଅରୋହି ନାବ
ଚନ୍ଦନ ପିଢ଼ିକା ମାରି କରନ୍ତି ଭାବ । ୨୧ ।

୧୪-୨ :—ଅନଙ୍ଗ ଦହେ ତେସନେ ମାର (ଖ) ।
୧୫ :—ଏ ପଦଟି କେବଳ (ଗ) ପୋଥିରୁ ପ୍ରାପ୍ତ ।

---

୧୪ । ରବି······ମାର—ସୂର୍ଯ୍ୟ ମେଘ ମଧ୍ୟରେ ରହିଲେହେଁ ଯେପରି ପୋଖରୀର ପାଣିକି ଶୁଖାଇଦିଏ, ସେପରି ମାର ନାମର ଚନ୍ଦନବୋଳା ଭୂତ ଦେହରେ ରହି ବିରହୀ ହୃଦୟକୁ ଦହନ କରେ ।
୧୬ । ବିପିନ-ଅନଳ—ବନ ଅଗ୍ନି । ୧୯ । ଦେବୀମାନେ—ପାର୍ବତୀଙ୍କ ସଖୀମାନେ ।

ପଅଁର କମଳ ତୋଳ କୂଳରୁ ଫିଙ୍ଗ
ତରଳ ତରଙ୍ଗ ଭଙ୍ଗେ ଲୋଚନ ରଙ୍ଗେ । ୧୨ ।

ମଧୁମଦ ପାନେ ମତ୍ତ ହେମନ୍ତ ବାଳୀ
ଅରୁଣ କଟାକ୍ଷ ଶମ୍ଭୁ ଉପରେ ଢାଳ । ୧୩ ।

ପ୍ରତ୍ୟକ୍ଷେ ପ୍ରକାଶ କରଅଛୁ ଅନଙ୍ଗ
ଘୂର୍ଣ୍ଣିତ ଲଷିତ ହାସ ଲୋଚନ ଭଙ୍ଗ । ୧୪ ।

ସଜଳ ସେଚନ ଶାନ୍ତ ଅରୁଣ ତାପ
ଅନ୍ତରେ ଅଧିକ ହୋଏ କାମ ସନ୍ତାପ । ୧୫ ।

ଦେଖିଣ ଚଳିତ ଭୂଷା ବସ୍ତ୍ର ମନେ
ଧିକ ଧିକ ଯଉବନ କାନ୍ତ ବହୁନେ । ୧୬ ।

ସ୍ତ୍ରିଙ୍କ ଜନ୍ମ ମନ ଏହୁ ବହଳ ଧାଡ଼ା
ତରୁଣ ସମୟେ ଦେଲା ବରଦ ଚନ୍ଦ୍ରା । ୧୭ ।

ଦେହରୁ ଜନମି ଉପୁ ଉରଜ ବେଳ
ମଦନ ରହଇ ତହିଁ ମନକୁ ପେଳ । ୧୮ ।

ହେନ ଅବବେକ ଯାହାଁ ସଦନ କରେ
ଖରଜ ସମୟେ ତହିଁ ବଶିଖ ମାରେ । ୧୯ ।

୧୩-୨ :—ଶଙ୍ଖରେ (ଖ) । ୧୮-୧ :—ଦେହରୁ ଉମଙ୍କେ ଉପୁ ଯୌବନ ବେଳ (ଖ) ।

---

୧୨ । ତରଳ...ରଙ୍ଗେ—ଚଞ୍ଚଳ ଲହଡ଼ିର ଭଙ୍ଗପରି ଚକ୍ଷୁ ଖେଳାରେ ।
୧୩ । ମଧୁମଦ—ମଦ୍ୟ । ହେମନ୍ତ ବାଳୀ—ପାର୍ବତୀ । ଅରୁଣ କଟାକ୍ଷ—ମଦ ପିଇ ହେତୁ ଲାଲ ହୋଇ ଥିବା ଆଖିର ବାଙ୍କ ଚାହାଁଣି ।
୧୪ । ଘୂର୍ଣ୍ଣିତ—ଘୂରୁଥିବା । ୧୮ । ଉରଜ—ସ୍ତନ । ୧୯ । ଅବେବେକ—[illegible] । ବଶିଖ—ଶର ।

ପୁଣି ବୋଲେ ମନଭଙ୍ଗୀ ମୁହିଁ ସେ ଏକା
ପଞ୍ଚ ସଙ୍ଗ ଲଭ ନାହିଁ କରୁଁ ନାସ୍ତିକା । ୩୦ ।

ଚପଳ ଲୋଚନ ତାର ଜାଣିଲେ ଉମା
ମଧୁର ସଖୀରେ ଭଣେ ଶଙ୍କର ବାମା । ୩୧ ।

ବଞ୍ଛିତ ପାଇବୁ ଯାହା ଦେଖିବୁ ସ୍ୱପ୍ନେ
ବଇଶାଖ ଶୁକ୍ଳ ତ୍ରୟୋଦଶୀର ଦିନେ । ୩୨ ।

ଶୁଣିଣ ହରଷ ହଂସଗମନୀ ଅଶେ
ସନ୍ନିଧେ ମିଳିଲା ଯେସନେ ଶଶୀ ଆକାଶେ । ୩୩ ।

ଅବଧି ସଙ୍କେତ ଦିନ ମନରେ ଗୁଣି
ପ୍ରବେଶ ସମୟ ଜାଣି ନିମିଷ ଗଣି । ୩୪ ।

ଉଠଇ ବସଇ ବାମା ବାହାରେ ଗୃହେଁ
ହରଷ ବିଷାଦ ମନ ସ୍ୱପନେ ରହେ । ୩୫ ।

ଏଥି ଅନନ୍ତରେ ହୋଏ ଦିବସ ଶେଷ
ଲୋହିତ ଅମର-ପୁର ସକଳ ଦିଶ । ୩୬ ।

ଲୁଚିଲା ପାଟଳୀ ନବ ପଲ୍ଲବ-ଶୋଭା
ମାଣିକ୍ୟ ସଂଯୋଗେ ଯେସନେ ପୋଏଲା ଆଭା । ୩୭ ।

କମଳ ମୁଦ୍ରିତ ଗୃହିଁ ଭ୍ରମର ଖେଦ
ଗଦଗଦ ଚକ୍ରବାକ ପୁଣି ବିଚ୍ଛେଦ । ୩୮ ।

୩୫-୨ :—ସ୍ୱପନ ସଙ୍କେତ କଥା ଜାଣିବେ ରହେ (ଖ) । ୩୭-୨ :—ସମ୍ଭୂତେ (ଖ) ।

---

୩୬ । ଅମରପୁର—ଆକାଶ ।

୩୭ । ପାଟଳୀ—ପାଟଳୀ ଗଛ, ଅଥବା ପାଟଳୀ ରଙ୍ଗ । ଆଭା—କାନ୍ତି ।

ମାନ ଯେଉଠେ ଅନୁରାଗ-ଲତାକୁ ମୋଟେ
ନଶି ଅନ୍ଧକାର ଘୋର ସୁରଙ୍ଗ ଭୁଟେ । ୩୯ ।

ସଙ୍କେତ ସଦନେ କାମୀ ଅଭୁରେ ଭ୍ରମେ
ପାଶେ ଅଭସାରୀ ଅନ୍ଧକାରେ ନ ଦଶେ । ୪୦ ।

ସନ୍ନିଧେ ମଧୁପ ଅଛୁ ଦଶଇ ନାହିଁ
ମଲ୍ଲିକା କାନ୍ଦଇ ମକରନ୍ଦ ପକାଇ । ୪୧ ।

ଏସନ ସମୟେ ଇନ୍ଦୁ ପଙ୍କିଲ ଆଭା
ପ୍ରିୟା କୁଚ କୁଙ୍କୁମେ କି ଭୂଷିତ ଶୋଭା । ୪୨ ।

ରଜନୀ ନବଢ଼ ମାନ-ଅନ୍ଧାର-କାଳୀ
ଦେଖି ନିଶାନାଥ ତାକୁ କିରଣ ଢାଳି । ୪୩ ।

ଦିନକର କରେ ତାପ କୁମୁଦ ଗୃହିଁ
ଆଲିଙ୍ଗନ କରେ କି ସେ କର ବଢ଼ାଇ । ୪୪ ।

ଚନ୍ଦ୍ରଶାଳା ପୁରେ ଲୁଚେ ଚନ୍ଦ୍ର କିରଣ
ଅନ୍ଧକାର ଲୁଚେ ଘନ ତମାଳ ବନ । ୪୫ ।

---

୪୦ । ପାଶେ ... ନ ଦଶେ—କୃଷ୍ଣାଭିସାରିଣୀ ନାୟିକା (ଯେଉଁ ନାୟିକା କୃଷ୍ଣ ପକ୍ଷରେ ତାହାକୁ କେହି ଦେଖି ନ ପାରିବା ଉଦ୍ଦେଶ୍ୟରେ କଳା ଲୁଗା ପିନ୍ଧି ପ୍ରିୟ ନାୟକ ପାଖକୁ ଯାଏ) ଅନ୍ଧାରରେ ଅଛୁଥିବାରୁ ତାହାକୁ ବରିଷ୍ଠ ପୁରୁଷ ସଙ୍କେତ ସ୍ଥଳରେ ଥାଇ ସୁଦ୍ଧା ଦେଖି ପାରିଲ ନାହିଁ ।

୪୨ । ପଙ୍କିଲ—ମଇଳ । ପ୍ରିୟା ... ଶୋଭା—ପ୍ରିୟାର ସ୍ତନ କୁଙ୍କୁମରେ ବୋଳା ହେଲେ ଯେପରି ଦେଖାଯାଏ, ଚନ୍ଦ୍ର ସେହି ପରି ଦେଖାଗଲା ।

୪୩ । ନବଢ଼ ମାନ-ଘୋର ଅନ୍ଧକାର, ତାହାକୁ ଅନ୍ଧାର ବୋଲି କବି ବର୍ଣ୍ଣନା କରିଅଛନ୍ତି ।

୪୫ । ଚନ୍ଦ୍ରଶାଳା ପୁର—କୋଠା ଉପରେ ଅତି ଉଚ୍ଚ ସ୍ଥାନରେ ଥିବା ଘର ।

କାମର ସଖୀତ ଯହୁଁ ଉଦଧି-ସୁତ
ସ୍ୱପନେହେଁ କୋବିଲ କୁଳ କଲ୍ପ ଉଦ୍ଧତ । ୪୬ ।

ଏମନ୍ତ ପ୍ରକାରେ ଗଳ୍ପ ପ୍ରହରେ ନିଶି
ପଲଙ୍କେ ଶୁଇଲ୍ଲ ଯାଇଁ କୁଟିଳକେଶୀ । ୪୭ ।

ତରକାଲେ ନିଦ୍ରା ହୋଇ୍ୟେ ନୟନେ ତାର
ସପନେ ସଙ୍ଗତ ହୋଇ୍ୟେ କାମ-କୁମର । ୪୮ ।

ଯେସନେ ରମିଲ୍ଲ ତାକୁ ରମଣୀମଣି
ଅନିରୁଦ୍ଧ ତେସନେ ରମିଲ୍ଲ ତରୁଣୀ । ୪୯ ।

ସ୍ୱରୂପ ବିଗ୍ରହ କଣ୍ଠେ କରନ୍ତେ କୋଳ
ନିଶି ଶେଷ ନିଦ୍ରାଗତ ବିରହେ ଭୋଳ । ୫୦ ।

ଆଭୀର-କାମିନୀ-କୁଚ-ମଣ୍ଡଳ କର
ପ୍ରପନ୍ନ ଜନମାନଙ୍କ ଦୁରିତହର । ୫୧ ।

ଗୋପୀନାଥ-ପଦ-ନବନୀରଜ ଶିରେ
ଊଷା-ଅଭିଳାଷ କହେ ଶିଶୁ ଶଙ୍କରେ । ୫୨ ।

---

୫୦-୨ :—ନିଦ୍ରାହତ (ଖ) । ୫-୧ :—ଅଭୀର ଭାବ ହୃଦୟ ମଣ୍ଡନ କର (ଗ) ।

---

୪୮ । କାମ-କୁମର—ଅନିରୁଦ୍ଧ । ୪୬ । ଉଦଧି-ସୁତ—ଚନ୍ଦ୍ର ।
୫୦ । ସ୍ୱରୂପ ବିଗ୍ରହ—ବାସ୍ତବିକ ମନେ କରି, ସତ ମଣି ।

ଇତି ଚତୁର୍ଥ ଛାନ୍ଦର ଉଷା-ଭିଳାଷିନୀ ଟୀକା ସମାପ୍ତ ।

# ପଞ୍ଚମ ଛାନ୍ଦ

ରାଗ—ଅହାରୀ

ପଲଙ୍କ ତେଜିଣ ଉଠିଲା ସୁମୁଖୀ ସପନ ସଂକେତ ପାଇଣ
ଆହା! ପ୍ରାଣନାଥ, କେଉଣେ ଗଲ ବୋଲି ଉଚ୍ଚସ୍ୱରେ କରେ କାରୁଣ,
        ଦଇବ! ଦେଖାଇ ନିଧି ହରି ନେଲୁ;
ଶିଶୁକୁମାରୀ ମୁଁ କିଛି ନ ଜାଣଇ କିମ୍ପାଇ ମୋତେ ଏହା କଲୁ? । ୧ ।

ସପନେ ଅଙ୍ଗସଙ୍ଗ ଲଭି ଅଙ୍ଗନା ବିରହେ ବାଉଳି ବଚନ,
ରତିଲାଳସେ ଅଳସଭରି ତନୁ ତରଳ ଚକିତ ଲୋଚନ,
        ହେ ନାଥ! ଏହିକ୍ଷଣି ଥିଲ ପଲଙ୍କେ,
ବିନା ଅପରାଧେ କିକେ ଛାଡ଼ି ଗଲ କାମିନୀ ମରଣ ନିଶଙ୍କେ । ୨ ।

ଛନଛନ ମନ ବାଉଳ ବଚନ ନିରେଖି ଚହେଁ ଦଶ ଦିଶ,
ଦଣ୍ଡକେ ଲେଉଟି ଲାଜ ବିକାଶିଲା ହେଠ ବଦନେ ଖର ଶ୍ୱାସ
        ତାହାକୁ, ଉଠି ପଚାରେ ଚନ୍ଦ୍ରଲେଖୀ,
କିସ ବିପରୀତ କହ ଗୋ! ଭୂପତି କେବଣ ଛନ୍ଦ ପ୍ରାଣସଖି! । ୩ ।

ଅବୋଧ ବାଳା ତୁ, ନାହିଁ ବିଜ୍ଞ ହେବୁ, ବଲ୍ଲଭ ଗୁଣେ କି କେ ଦୁଃଖୀ
ମଧୁପାନ ଆଶେ ଚମ୍ପକ ବିକାଶେ କେଉଁ ମଧୁପ ମିଳେ ସଖି!
        (ଅହେ)ସଙ୍ଘାତ, ସ୍ୱରୂପ କହ ମୋରେ ବାଣୀ;
ରବି ପବନ ଅଗମ୍ୟ ଅନ୍ତପୁରେ କାହୁଁ ପୁରୁଷ କଲୁ ଆଣି । ୪ ।

---

୨ । କିକେ—କାହିଁକି । କାମିନୀ ମରଣ ନିଶଙ୍କେ—ସ୍ତ୍ରୀ ମରଣ ବିଷୟରେ ଶଙ୍କା ନ କରି ।

ସଖୀବାଣୀ ଶୁଣି ନବ୍ରାଭବ ସ୍ମରି ପୁଲକେ ପୂରି ଗଣ୍ଡ ଜାନୁ,
ନବ ଅନୁଭବେ କାତର ଅଧର ଆଶ୍ୱାସି ଝୁମ ଝୁମ ତନୁ ।
ଚଭୁଙ୍ଗୀ, (ତାର) ଚମକ ଉଠେ ଅଙ୍ଗ ଭଙ୍ଗ ;
ଅଙ୍ଗ ଅଶକତେ ଭୂମିରେ ଶୁଇଲା, ଶିଥିଲା କେଶବାସ ଅଙ୍ଗ । ୫ ।

ମୁଖେ ନୀର ସିଞ୍ଚି ଧୀରେ ଧୀରେ ବସି ଚନ୍ଦ୍ରଲେଖା ମୁଖ ବରସ,
ବାରୁ ଦଇବ କେବଣ ବିପରୀତ ବରଷା କଲୁ ମଧୁମାସ ।
(ଆଗୋ) ସଙ୍ଗାତ! ମୋହ ମେଘ ତୋତେ ରୁନ୍ଧିଲା
ଲୋଚନନୀର ଛୁଟରେ ବରଷନ୍ତେ କୋକିଳ ବଚନ ବାଧିଲା । ୬ ।

ମଳନ ଅଧର ଜମ୍ବୁର ଆକାର କମ୍ପିତ କୁଚ କେକୀ ନୃତ୍ୟ,
ଶୋକ-ସାଗରେ ମନ-ନଦୀ ମିଶିଲା, ଚେତନା ଚଞ୍ଚଳ ତଡ଼ିତ ;
(ଆଗୋ) ସଙ୍ଗାତ! କହ ମଧୁର ମୃଦୁରସ ।
ସଚେତ ହୋଇ ଶରଦ-ଚନ୍ଦ୍ରାନନୀ ଲାଜ ସଂକୋଚେ ହସ ହସ । ୭ ।

କହୁ ମନେ କଲେ ଲାଜ ନିବାରଇ ଉତ୍ସୁକ କରେ ମନୋରଥ,
ଜାଡ଼ ବାହୁ ଭୁଣ୍ଡ ବଚନ ଭୁଲଇ ସପନେ ମନ ଛନ୍ଦଗତ ।
(ଆଗୋ) ସଙ୍ଗାତ! ନବ-ଜଳଦକାନ୍ତି ଶ୍ୟାମ ;
ସ୍ୱପନେ ମୋତେ ବିଡ଼ମ୍ବଣ କଲା ସେ ରୂପେ ନ ଗଣେ କୋଟିକାମ । ୮ ।

୬-୧ :—ମଳ (ଖ), ମନେ (ଗ) । ୭-୧ :—କମ୍ପିତ, କେକୀ ମତ୍ତ (ଖ) । ୭-୨ :—ଅଷ୍ଟଳ (ଗ) ।

---

୫ । ନବ୍ରାଭବ—ସ୍ୱପନ ବୃତ୍ତାନ୍ତ । ଅଙ୍ଗଭଙ୍ଗ—ଦେହ ଭଙ୍ଗି । ଶିଥିଳ—ଢିଲା ହେଲା ।
୬ । ଛୁଟନ—ଫୋଆରା । ବରଷା···ମଧୁମାସ—ବସନ୍ତକାଳରୁ ବର୍ଷାକାଳରେ ପରିଣତ କଲୁ । ମୋହ ହେଲା ମେଘ, ଲୁହ ହେଲା ପାଣି । ବର୍ଷାକାଳରେ କୋକିଳର ଶବ୍ଦ ଶୁଣାଯାଏ ନାହିଁ । ଏଠାରେ ଉଷାର କୋକିଳସ୍ୱର ତୁଲ୍ୟ ବଚନ ଶୁଣାଗଲା ନାହିଁ ।
୭ । ଜମ୍ବୁ—ଜାମୁକୋଳି । କେକୀ—ମୟୂର । ୮ ବିଡ଼ମ୍ବଣ—ହଠ ହଷ୍ଟା ।

କହୁ କହୁ ତାର ତରଳ ଲୋଚନୁ ବହେ କଜ୍ଜଳ ଜଳଧାର,
ଚିତ୍ରଲେଖା ବୋଲେ ଚିତ୍ତ ସ୍ଥିର କଲେ ଲଭିବ ଚିତ୍ତପତି ସାର,
(ଅଗୋ) ସଖୀ ! ଅଣିମି ତାକୁ ଦେଖାଇଲେ ;
ଚରଣେ ପଡ଼ି ଚଭୁଷା ବୋଲେ ଲବ୍ଧ ଜଇବ ସେ ଚିତ୍ର ଗ୍ରହିଲେ । ୯ ।

ଅଖିଳ ଚିତ୍ରଲେଖନ ଚିତ୍ରକାର ବିଚିତ୍ର ଚିତ୍ର କମନୀୟ,
ନୀଳାଦ୍ରିନାଥ ଚନ୍ଦ୍ରମୁଖ ଦେଖାଇ ଚିତ୍ରଲେଖା ଚିତ୍ରେ ବିନୟ,
ଚଭୁଷା, (ସେ ଯେ) ପଟେ ଲିହିଲା ପୁର ଭିନ ;
ଚଞ୍ଚଳ ଚିତ୍ତ ସ୍ଥିର କର ସେ ଚିତ୍ର ଗ୍ରହିଁ କୁରଙ୍ଗୀନୟନୀ । ୧୦ ।

ଭୃଗ-ପୁରେ ନିଜ କାନ୍ତ ନ ପାଇ ଚଞ୍ଚଳ ଚକ୍ଷୁ ବାହୁଡ଼ିଲା,
ନବ ଜଳଧର ନୀଳଚ୍ଛେ ଗ୍ରିଡିଙ୍କି ଗଙ୍ଗା ଠେକି କି ଲେଉଟିଲା ।
ସଜନି ! (ସେ ଯେ) ଅମର ପୁର ଦେବଗଣ ;
ଯଥାବିଧି କର ମଣାଇ କହିଲା ଏକେ ଏକେ ନାମ ଧରିଣ । ୧୧ ।

ଇନ୍ଦ୍ର ଚନ୍ଦ୍ର ରବି ବରୁଣ କୁବେର ଯମ ଅନଳ ଶିବ ଲୋକ,
ଗନ୍ଧର୍ବ କିନ୍ନର ଜଣେ ଜଣେ କରି ବଚନେ କେ କହୁ ଅନେକ,
ରମଣୀ, (ସେ) ଅନେକ ପୁରୁଷ ଦେଖିଲା ;
ରହି ମଧ୍ୟରେ ପଞ୍ଚାଶ ଦିକ ଯେତେବେ ଚିତ୍ତମୁକୁଳ ନ ଦେଖିଲା । ୧୨ ।

୯-୨ :—ଲେଖିବ (ଖ) । ୧୦-୧ :—ଅଖିଳ ଲେଖନ ଅତି···(ଗ) । ୧୦-୨ :—
ମତ (ଖ); ମନେ (ଚ) । ୧୧-୨ :—ଦେବେନ୍ଦ୍ର ଉତ୍ସବ (ଗ) । ୧୨-୩ :—
ଅକଥନ କଷ୍ଟ (ଖ), (ଗ) ।

---

୧୦ । ବିଚିତ୍ର ଚିତ୍ର କମନୀୟ—ଅଦ୍ଭୁତ ସୁନ୍ଦର ଛବି । ନୀଳାଦ୍ରିନାଥ—ଜଗନ୍ନାଥ ।
ଦେଖାଇ—ଲେଖି । ୧୧ । ଭୃଗ ପୁରେ—ପାତାଳରେ ।

ଅଶେଷ ଦେବ ନାଗଲୋକ ଦେଖାଇ ସୁନ୍ଦରୀ ସଂକେତ ନ ଦେଖି,
ଅବନୀ ଦାନବ ମାନବ ସକଳ ନୃପଙ୍କ ନଗର ନିରେଖି,
ସଖୀ ଯେ, (ତାଙ୍କୁ) ସବୁ ପୁରମାନ କହନ୍ତି ;
ଅଶେଷଭୁବନ ପ୍ରତି ଦିବ୍ୟପୁର ଦେଖନ୍ତେ ମନକୁ ମୋହନ୍ତି । ୧୩ ।

ମାନ ସରୋବରେ ହେମ ପଦ୍ମପରେ ଶୋଭିଲା କି ମତ୍ତ ରାଜହଂସ,
କନକ ପାଚିରୀ ସାଗର ଭିତରେ ମଧ୍ୟରେ ଦ୍ୱାରିକା ଦେଶ,
ସେ ପୁର, ବରନେ କେ କହୁ ଉପାମି ;
ମହୀମଣ୍ଡଳେ ପ୍ରକାଶ ହୋଇଅଛି ବିବିଧ ରତ୍ନଜାତ ଭୂମି । ୧୪ ।

ଅବନୀ ଗଗନ ଶେଷ ଭାଗେ କି ସେ ଉଦେ ଶରଦଶୀତକର,
ହଂସଗମନୀ ମନସିନ୍ଧୁ ସାନନ୍ଦ ପ୍ରକାଶେ ଲୋଚନ-ଚକୋର ।
ସେ ପୁରେ, ଅଠର ବଂଶ ଲୋକମାନ ;
ରାଜା ଉଗ୍ରସେନ ଆଦି ଅନୁସରି ଦେଖିଲା ମୁକୁନ୍ଦ ସଦନ । ୧୫ ।

ମନ ମଦନ-ବିଧୁର ପାସୋରିଲା ପରମବ୍ରହ୍ମ ପୁରେ ପଶି,
ଷୋଳ ସପ୍ତ ଶଏ ଅଷ୍ଟ ଦିବ୍ୟପୁର ରମଣୀ ଗୃହଁଲା ବିଶେଷି ।
ଅବଲା, (ସେ ଯେ) ବସୁଦେବ ଦେଖି ହରଷ ;
ରାମକୃଷ୍ଣ ତାଙ୍କ ସନ୍ନିଧେ ଦେଖିଣ ଉତ୍ସୁକ ଲାଜେ ହସ ହସ । ୧୬ ।

---

୧୩ । ଅବନୀ ଦାନବ ମାନବ—ମର୍ତ୍ତ୍ୟର ଅସୁର ଓ ମନୁଷ୍ୟ ।

୧୫ । ଅବନୀ ଗଗନ ଶେଷ ଭାଗେ—ଚକ୍ରବାଳରେ । ଶରଦ-ଶୀତକର—ଶରତ୍ କାଳରେ ନିର୍ମଳ ଚନ୍ଦ୍ର । ଅନୁସରି—ଅନୁସନ୍ଧାନ କରି, ଖୋଜି । ମୁକୁନ୍ଦ ସଦନ—କୃଷ୍ଣଙ୍କ ଘର ।

୧୬ । ମଦନ ବିଧୁର—କାମ ପୀଡ଼ା । ପରମ ବ୍ରହ୍ମପୁରେ—କୃଷ୍ଣଙ୍କ ପୁରରେ ।

ଯୋଗୀନ୍ଦ୍ର ହର-ତପହତ କାମକୁ ଅଙ୍ଗୁଳ ଯେନ ଦେଖାବନ୍ତେ,
କୁରଙ୍ଗୀଲୋଚନୀ ଲାଜେ ସଙ୍କୁଚିତ ତନୁ ଓଢ଼ାଇଲା ପଣନ୍ତେ ।
ବାଳା ଯେ, ତନ୍ତୁଁ ଦେଖିଲା ଅନିରୁଦ୍ଧ;
ଅପାଙ୍ଗେ ଗୃହିଁ ପୁଲକିତ ହୋଇଲା ନ ଗୃହିଁ ଗୃହିଁବାକୁ ଶଧ ।୧୭।

କପୋଳପାଳୀ ପୁଲକ ମୁକୁଳିତ ଉଲସି ଉଠେ କଳେବର,
କନକ କଦଳୀ ଜଘନ ସ୍ତମ୍ଭିତ, କମ୍ବୁକଣ୍ଠରେ ସ୍ୱେଦ ନୀର,
ବାଳା ଯେ, (ତାର) ଲପନ ବିମ୍ବ ବିକାଶିଲା;
ବିପୁଳ ସଘନ ପୀନ ପୟୋଧର ସଧୀରେ କମ୍ପି ଆଭ୍ରସିଲା । ୧୮ ।

ଚଞ୍ଚୁଳତର ତରଳ ଦୃଗଞ୍ଚଳ ବଲ୍ଲଭବଦନେ ପଡ଼ିଲା,
ମାଳତୀ ମଧୁର ମଧୁରସେ କି ଯେ ମଧୁକର ମତ୍ତ ବୁଡ଼ିଲା ।
ତ୍ରପା ଯେ, (ତାକୁ) ବିଯୋଗ କରେ ପୁଣ ପୁଣି;
ଗୃହୁ ମନୋରଥ ତା'ସଙ୍ଗେ ବିବାଦ ସେନେହ କରେ ଅଣି ଅଣି ।୧୯।

ଅଶେଷ-ରମଣୀ-ଶିରୋଭୂଷାମଣି ଧଇର୍ଯ୍ୟ ମନେ ନ ମଣିଲା,
ଲୋଚନପଥେ ମନକୁ ଯୋଗ କରି ଚିତ୍ତଶୋଭା ବେଗେ ଅଣିଲା ।
ସ୍ନେହରେ, (ତାକୁ) ହୃଦୟ-ତଟରେ ବସାଇ,
ହାଇ ବାଇ, କରି ହୃଦରେ ରହିଲା ମୁଖେ ମୁଖ ମନ ମିଶାଇ ।୨୦ ।

୨୦-୨ :—ସଙ୍ଗୀ ହରି (ଗ) ।

---

୧୭ । ତପହତ—ତପରେ ମଉଥିବା । ୧୮ । କପୋଳପାଳୀ—ଗଣ୍ଡସ୍ଥଳ । ପୁଲକ-ମୁକୁଳିତ—ଆନନ୍ଦରେ ରୋମାଞ୍ଚାଙ୍କୁରିତ । ଲପନ-ବିମ୍ବ—ମୁଖ ଦର୍ପଣ ।

୧୯ । ଚଞ୍ଚୁଳତର—ଅତି ଚଞ୍ଚଳ । ତରଳ—ଚଳ ଚଳ । ଦୃଗଞ୍ଚଳ—ଆଖିର ବଙ୍କ ଚହାଣି ବା ଶେଷ ଚହାଣି । ତ୍ରପା—ଲଜ୍ଜା ।

୨୦ । ହାଇବାଇ—ଅସ୍ଥିର ହୋଇ ।

ମନମତ୍ତକରୀ ବାରଣ ନ ଯାଇ ଜାଣିଲା ସଖୀ ଚନ୍ଦ୍ରଲେଖା,
ଅତି ଯତନେ ପଞ୍ଚ ମୁଦ୍ର ଥୋଇଲା କହି ମଧୁର ମୃଦୁ ଭାଖା ।
ସଙ୍ଗାତ! ଦୁର୍ଲ୍ଲଭ ଜନେ ଅନୁରାଗ,
ଚଉଦ ଭୁବନେ ଯେଣୁ ଅପୂରୁବ ତାହାରେ ବଳିଲା ସରାଗ । ୨୧ ।

ଚନ୍ଦ୍ରବଦନୀ ହେଠମାଥେ ବସିଲା, ସଖୀ କହଇ ରସବାଣୀ;
ଉଷାପତି-ତାତ-ପିଅର-ଚରଣେ ଶିଶୁଶଙ୍କର ଶିରୋମଣି ।
ସୁଜନେ, ଶୁଣି ନ ଧର ମୋର ଦୋଷ ;
ପଞ୍ଚମ ଛାନ୍ଦ ଶୁଭେ ଶେଷ ହୋଇଲା ସରସ ଉଷା-ଅଭିଳାଷ । ୨୨ ।



୨୧ । ଭାଖା—ଭାଷା । ୨୨ । ଉଷାପତି-ତାତ-ପିଅର—ଉଷା ପତି ଯେ ଅନିରୁଦ୍ଧ, ତାଙ୍କର ତାତ ଯେ କନ୍ଦର୍ପ, ତାଙ୍କର ପିଅର ଯେ ଶ୍ରୀକୃଷ୍ଣ ।

ଇତି ପଞ୍ଚମ ଛନ୍ଦର ଉଷା-ଉଲ୍ଲାସିନୀ ଟୀକା ସମାପ୍ତ

# ଷଷ୍ଠ ଛାନ୍ଦ

ରାଗ—(ମଙ୍ଗଳ ଗୁର୍ଜ୍ଜରୀ) ନଳନୀଗୌଡ଼ା

ଭାବକୁ ନିକଟ ଯେ ଜଗତଜନ ବନ୍ଧୁ
ଆରତ ଜନର ଯେ କରୁଣାମୟ ସିନ୍ଧୁ ଗୋ । ୧ ।

ତାହାଙ୍କ ଚରଣ ମନେ ଧରି ସଦାଚରି
ଉଷା ମୁଖ ଚାହିଁ ରସ ବଚନ ପଚାରି ଗୋ । ୨ ।

ଅନାଦି ପୁରୁଷ ଯାର ଆଦି ଅନ୍ତ ନାହିଁ
ଅବନୀ ଜନମ ହେଲେ ଖିତି ଭାର ପାଇଁ ଗୋ । ୩ ।

ମଥୁରା ନଗରେ ଜାତ ବସୁଦେବ ଘରେ
ଗୋପରେ ବଢ଼ିଲେ ଯାଇଁ କଂସ ରାଜା ଡରେ ଗୋ । ୪ ।

ପୂତନା ଶକଟା ବତ୍ସ ବକା ଅଘାସୁର
ପ୍ରଲମ୍ବା ଧେନୁକା ତୃଣା କେଶୀ ମହାବୀର ଗୋ । ୫ ।

ଶଙ୍ଖଚୂଡ଼ ବେଦଶ୍ରେର ବ୍ୟୋମାସୁର ଆଦି
ଲୀଳାମାତ୍ରେ ମାରିଲେ ଅମରପୁରବାସୀ ଗୋ । ୬ ।

କୁବେର ନନ୍ଦନ କଲେ ଶାପରୁ ମୁକତ
ଗିରି ତୋଳି ସୁରପତି ଗର୍ବ କଲେ ହତ ଗୋ । ୭ ।

୫-୨ :—ଷଣ୍ଢା (ଖ, ଗ) । ୬-୧ :—ମଣିଚୂଡ଼ (ଖ) । ୬-୨ :—ଦେହୀଳାମାତ୍ରେ (ଖ) ।

୬ । ଅମରପୁରବାସୀ—ଦେବତା ମାନଙ୍କ ଶତ୍ରୁ (ରାକ୍ଷସ) ।

ଶିଶୁ ବତ୍ସ ହରଣ ହାରଲା ଯାକୁ ବ୍ରହ୍ମା
କାଳୀ ଦଳ ଗୁହାଇଲେ କାଳନ୍ଦୀ ମହିମା ଗୋ । ୮ ।

ଭାବକୁ ନାକନ୍ତ ଯେ କରୁଣାମୟ ଘେଣି
ରମିଲେ ଗୋପରମଣୀ ଭାବରଙ୍ଗେ ତୋଷି ଗୋ । ୯ ।

କୁବଳୟା କର୍‌ଣ୍ଣ ଅଷ୍ଟମଲ୍ଲ ମୂଳେ କଂସ
ଲୀଳାମାତ୍ରେ ମାରଣ ରଖିଲେ ଯଦୁବଂଶ ଗୋ । ୧୦ ।

ଜରାସନ୍ଧ ରାଜାକୁ ଅଠରବେଲ ଜିଣି
କପଟେ କାଳଦମନ ନାଶି ଯଦୁମଣି ଗୋ । ୧୧ ।

କୁଶସ୍ଥଳୀ ପୁର ସିନ୍ଧୁ ଉତରେ ଉତ୍ତମ
ନବର ରଚଲେ ତହିଁ ଅଛ ମନୋରମ ଗୋ । ୧୨ ।

ଷୋଳ ସସ୍ର ଶଏ ଅଷ୍ଟ ଶୂର ରାଜଜେମା
ଅଷ୍ଟ ପାଠବଂଶୀ ଶ୍ରେଷ୍ଠ ଭାର୍ଯ୍ୟାକର ଜେମା ଗୋ । ୧୩ ।

ତାହାଙ୍କର ଜ୍ୟେଷ୍ଠ ପୁତ୍ର ପ୍ରତକ୍ଷେ ମଦନ ;
ଅନିରୁଦ୍ଧ ଦେଖିଲୁ ଭୂ କାମର ନନ୍ଦନ ଗୋ । ୧୪ ।

ଅଗମିତ ପୁର ତାର ଦୁର୍ଲ୍ଲଭ ଦର୍ଶନ
ତୋହୋର ବେଦନା ଅର୍ଥେ କରବ ଗମନ ଗୋ । ୧୫ ।

୮-୨ :—ନିଭାଣିଲେ (ଖ)।

୯-୧ :—ଯମୁନା ନକୁଞ୍ଜେ ଯେ (ଗ)। ୯-୧ :—ଭଗଭଜନ (ଖ)।

୯-୨ :—ଧୃବଟା (ଖ)। (ଗ)। ଢବବଣେ (କ)।

୧୦-୨ :—ହେଲା (କ)।

୧୩-୧ :—ଷୋଳ ସ୍ରସ୍ର ଶଏ ସୁର ନର ଜେମା (ଖ)। ଷୋଳ ସହ୍ସ୍ର ଶଏ ଅଠ ସୁର ରାଜଜେମା (ଗ)।

୨

ପାଶରଲେ ଆଣିମି ମନ ନ କର କାତର
ଶୁଣିଣ ସୁଜନସ୍ତ ବହେ ନୟନରୁ ନୀର ଗୋ । ୧୬ ।

ଚରଣ ଧରଇ ସଖି ! ମୁହିଁ ମନ୍ଦଭାଗୀ
ଲାଜ ଉପେକ୍ଷିଲି ମୁଁ ଦୁର୍ଲ୍ଲଭ ଜନ ଲାଗି ଗୋ । ୧୭ ।

ବିଳମ୍ବ ନ କର ଚଳ ପଥ ହୋଉ ଶୁଭ
ଲକ୍ଷ୍ମୀପତି ମନୋରଥ କରନ୍ତୁ ସୁଲଭ ଗୋ । ୧୮ ।

ପରମ ମଙ୍ଗଳର ମଙ୍ଗଳ ଜଗନ୍ନାଥ
ତାହାଙ୍କୁ ସ୍ମରି ଚଳ ଦ୍ୱାରବତୀ ପଥ ଗୋ । ୧୯ ।

ସଦାଶିବ ଗଉରୀ ହେରମ୍ବ ହୋନ୍ତୁ ସାହା
ବିଳମ୍ବ ନ ହୋଇ ବେଗେ ଆଣ ପ୍ରାଣନାହା ଗୋ । ୨୦ ।

ଶୁଣିଣ ସାନନ୍ଦ ମନେ ଭୁଷଣ୍ଡ-ଦୁହିତା
କମଳ-ଦଳ-ଲୋଚନ ମନେ କଲା ଚିନ୍ତା ଗୋ । ୨୧ ।

ମଙ୍ଗଳ ସଙ୍କେତ ତାକୁ ହୋଇଲା ଦର୍ଶନ
ଅନ୍ତରୀକ୍ଷେ ଚଳଗଲା ଦ୍ୱାରକା ଭୁବନ ଗୋ । ୨୨ ।

ସମୁଦ୍ର ନିକଟେ ରହି ନ ପାରଇ ପଶି
ମନେ ଭାଳନ୍ତି, ଭେଟିଲା ନାରଦ ମହାଋଷି ଗୋ । ୨୩ ।

୧୬-୧ :—ଅବଶ୍ୟ (କ) । ୧୭-୧:—ଲାଜ ଛଡ଼ି, ବେଦନା···(କ) । ୨୦-୧:—ହୃଅନ୍ତୁ ତୋଷେ (ଖ) । ୨୦-୨:—ମୋତେ (ଗ) ।

---

୧୭ । ଲାଜ······ଲାଗି—ଏହି ପଦ୍ୟାଂଶର ପାଠାନ୍ତର ଅର୍ଥ ମଧ୍ୟ ସମୀଚୀନ ଅଟେ । ଯେହେତୁ —ଲାଜ ଉଚ୍ଛେଦ, ଦୁର୍ଲ୍ଲଭ ଜନଙ୍କୁ ପାଇବାକୁ ପ୍ରାଣରେ ବେଦନା ଲାଗିଲା— ଏହିପରି ଅର୍ଥ ଗ୍ରହଣ କରାଯାଇ ପାରେ । ୧୮ । ଲକ୍ଷ୍ମୀପତି—ଜଗନ୍ନାଥ ।
୨୦ । ହେରମ୍ବ—ଗଣେଶ । ୨୧ । ଭୁଷଣ୍ଡ-ଦୁହିତା—ଚନ୍ଦ୍ରଲେଖା ।

ମୁନିଙ୍କି କାର୍ପୁଣ୍ୟ ହୋଇ ବୋଲଇ ଗୋସାଇଁ
କେମନ୍ତେ ଦ୍ୱାରକା ମୁହିଁ ପାରିବଇଁ ଯାଇ ଗୋ । ୨୪ ।

ସର୍ବଜ୍ଞ ପୁରୁଷ ସେ କହିଲେ ମନ୍ତ୍ରସାର
ତାହା ଘେନି ପଶିଲ୍ଲ ସେ କୃଷ୍ଣର ନଗର ଗୋ । ୨୫ ।

ପୁରେ ପୁରେ ଅନୁସରି ଲୋଡ଼ଇ ତରୁଣୀ
ଅନିରୁଦ୍ଧ ଉନ୍ମତ ଉଷାଭାବ ଗୁଣି ଗୋ । ୨୬ ।

ରଜନୀ-ସପନ-ଧ୍ୟାନ ପଲଙ୍କରେ ବସି
ବିଷୟ ବିଳାସ ରସେ କେବେହେଁ ନ ରସି ଗୋ । ୨୭ ।

ଉଠଇ ବସଇ ଉରେ ଚାପଇ ଚନ୍ଦନ
ଶୀତଳ ସମୀର ଇଚ୍ଛେ ମଦନ-ନନ୍ଦନ ଗୋ । ୨୮ ।

ବିଳାସିନୀ-ବୃନ୍ଦ ବେଢ଼ି ନୃତ୍ୟଗୀତ ଗାଇ
ବିମୁଖ ଭ୍ରମରମଣି ରମଣୀ ନ ପାଇ ଗୋ । ୨୯ ।

କୋକିଳ ବଚନ ଶୁଣି ଚମକଇ ଦେହ
ସପନ ଭାବିଣ ଷଣେ ଷଣେ ହୋଏ ମୋହ ଗୋ । ୩୦ ।

ଗୁପତ ବେଦନା ତାର ନ ଜାଣନ୍ତି କେହି
ଚନ୍ଦ୍ରଲେଖା ହରଷ, ଚକିତ ହୋଏ ରହିଁ ଗୋ । ୩୧ ।

ମନ୍ତ୍ରବଳେ ପଲଙ୍କ ସହିତ ଘେନି ଶିରେ
ଦିବସ ଶେଷେଣ ମିଳେ ଶୋଣିତ ନଗରେ ଗୋ । ୩୨ ।

୨୭—୨ :—ବୃପ (କ) । ୨୮—୧ :—ତାରେ (ଖ), ତାର (ଗ) । ୨୮—୨ :—ଉଚ୍ଛେ (ଖ) ।

---

୨୪ । କାର୍ପୁଣ୍ୟ—କାକୂତି ମିନତି କରି ।

ଅନ୍ତଃପୁରେ ଊଷାର ମେଢ଼ରେ କଲା କେଳ
ପଲଙ୍କ ଉପରେ ସୁନ୍ଦର ଦେଖି ଏକ ଶୋଇ ଗୋ । ୩୩ ।

ବସ୍ତ୍ରଯୁକ୍ତ ଅବଳା ଦେଖି ମନସିଜ-ସୁତ
ପଲଙ୍କୁ ଉଠୁର ଶୀର ହୋଏ ଉପଗତ ଗୋ । ୩୪ ।

ବରଦେ ବନ୍ଧୁର ଶିଶୁ କୁରଙ୍ଗୀ-ଲୋଚନୀ
ଅନିରୁଦ୍ଧ ସମୀପେ ବସିଲା ସ୍ନେହ ଘେନି ଗୋ । ୩୫ ।

ଲାଜ ଭୟ କାତର ମନରେ ହୋଏ ଜାତ
ମଦନ ବାଧିଲା ତାଙ୍କୁ ହୋଇଲା ଉଦ୍‌ବତ ଯେ । ୩୬ ।

ଅଧରେ ଅଧର ଦେଇ ଭାଷେ ମୃଦୁବାଣୀ
ପ୍ରାଣବନ୍ଧୁ ହସି କଥା କହସି ମିଳଣି ଗୋ । ୩୭ ।

ଚକିତ ରମଣୀ ଲାକେ ହେଠମାଥେ ବସି
ଗ୍ରହଭୟେ ଶଶୀ କ କଣଯୁ ଗିର ପଶି ଗୋ । ୩୮ ।

ଦ୍ୱାରକା-ପତି ଚରଣେ ଦାସ ପରଦାସ
କହଇ ଶିଶୁ ଶଙ୍କର ଊଷା-ଅଭିଳାଷ ଗୋ । ୩୯ ।

---

୩୪—୨ :—ସନ୍ନିଧ୍ୟେ ମିଳିଲ (ଖ) ।

---

୩୪ । ମନସିଜ ସୁତ—ଅନିରୁଦ୍ଧ । ଉପଗତ—ପାଖରେ ଉପସ୍ଥିତ ।
୩୮ । କଣସ୍ୱ-ଗିରି—ସୁନା ପର୍ବତ (କଣସ୍ୱ କନକ ଶବ୍ଦର ଅପଭ୍ରଂଶ) ଅର୍ଥାତ୍ ମେରୁ ପର୍ବତ

ଇତି ଷଷ୍ଠ ଛାନ୍ଦର ଊଷା-ଉଲ୍ଲାସିନୀ ଟୀକା ସମାପ୍ତ

# ସପ୍ତମ ଛାନ୍ଦ

---

ଦଣ—ଶ୍ରେଖୀ

ସପନ ଚେତଅ ବାଣୀରେ ଗାଇବ ।

ଏଥୁ ଅନନ୍ତରେ ତହୁଁ    ଅବନୀରେ ଥିଲେ ଶୋଇ
ସ୍ୱରୂପେ ଦେଖିଲେ ରାମା ସଜନୀ ସଙ୍ଗେ,
ଅଭିନବ ମନସିଜ    ଅଭିମତ ଫଳ ଦ୍ୱିଜ;
ନିଜ ବପୁ ସାତ୍ତ୍ୱିକ୍ୟ ତା ବାଧିଲେ ଅଙ୍ଗେ;
ଯେମନ୍ତ ସେ ହୋଇଲେ ବାଳା;
ବଚନେ କହିବ କେନ୍ତୁ, ସେ ରସକଳା । ୧ ।

ମାଧବୀ ମଧୁ ସମୟେ    ରସାଳ ମଳୟ ବାୟେ
ମଧୁପ, ମାଳତୀ କଢ଼ି ବିକାଶେ ଜାଣି,
ଚାତକ ପୟୋଦ ଦେଖି    କୁମୁଦ ଶଶୀ ନିରେଖି
ରସିକ ସୁଜାଣ ପାଇ ବର-ତରୁଣୀ
ଶଶିମୁଖୀ ଆନନ୍ଦ ହେବେ
ଉପଦେଶ ଅନୁଭବ ସୁଜନ ଯେବେ । ୨ ।

---

୧ । ସ୍ୱରୂପେ—ପ୍ରତ୍ୟକ୍ଷରେ । ଅଭିନବ ମନସିଜ—ନୂଆ ବା ଦ୍ୱିତୀୟ କନ୍ଦର୍ପ ତୁଲ୍ୟ ସୁନ୍ଦର । ଅଭିମତ ଫଳ ଦ୍ୱିଜ—ଇଚ୍ଛାନୁସାରେ ଫଳଦାୟକ ବ୍ରାହ୍ମଣ ବା କ୍ଷତ୍ରିୟ ବୀର । ସାତ୍ତ୍ୱିକ—ପ୍ରେମାଶ୍ରାଦି ବିକାର । ରସକଳା—ରସରେ କଳାବତୀ, ରସପୂର୍ଣ୍ଣା ।

୨ । ରସାଳ—ଆମ୍ବ । ସୁଜାଣ—ସୁଜ୍ଞ [ସୁବୋଧ] ।

ପାଣ୍ଡୁ ହୋଇଥିଲା ଗଣ୍ଡ        ସହଜେ ସୁନ୍ଦର ତୁଣ୍ଡ
ଦମ ଦମ ପୟୋଧର ତଟ, ରମଣୀ
କଣ୍ଠରେ ରୁନ୍ଧିଲା ବାଣୀ        ପୁଲକିତ ହୋୟେ ଶୁଣି
ବିଶେଷେ ବାଧିଲା ଲାଜ ତରୁଣୀମଣି
ଚେଲାଞ୍ଚଳେ ଉହାଡ଼ି ଅଙ୍ଗ
ମୁଖ-ଶଶୀ କଲା କୁଚ-ଶମ୍ଭୁରେ ସଙ୍ଗ । ୩ ।

ଚୁମ୍ବଶିଳ ଲୋହ ଜାଣି        ତୁରତେ ଭ୍ରମର ମଣି
ବିଷୟୁ ବିବେକ କ୍ଷଣି ତରଳମନା
କୁମାରୀ ସନ୍ନିଧେ ବସି        ବିନୟୁ ବଚନ ଭାଷି
ସଭୟେ କହେ ସୁକେଶୀ ମୃଗଲୋଚନା
ଦୃଗଞ୍ଚଳେ ହର ମୋ ମତି
ଉରଜ-ସଙ୍କଟେ କହେ ଭବ ଯୁବତୀ । ୪ ।

ଇଷିତ ଆଜ୍ଞାରେ ଯାଇ        ପାଶେ ଆସି ପଚାରଇ
ଅବନୀ ଶୟନ କହେ ପାଣ୍ଡୁର ଗଣ୍ଡ
ଯେବେ ଅଛୁ ଅନୁରାଗ        ଉଡ଼ା ମୋରେ ଭୁଜ ସ୍କନ୍ଧ
ଅପରାଧ ଅନୁରୂପେ କରହ ଦଣ୍ଡ
କରରୁହ ଦଶନ କ୍ଷତ
ଯେଣେ ରୋଷ ଛାଡ଼ ହୋଏ ହରଷ ଜାତ । ୫ ।

୩-୧ :—ସୁନ୍ଦର ତୁଣ୍ଡ (କ, ଖ) ।

---

୩ । ସୁନ୍ଦର-ତୁଣ୍ଡ ଗଣ୍ଡ :—ସୌନ୍ଦର୍ଯ୍ୟ ଠୁଳ ହୋଇଥିବା ଗଣ୍ଡଦେଶ । ପାଣ୍ଡୁ—ଫିକା ବା ଶେତା । ମୁଖଶଶୀ···ସଙ୍ଗ—ଲାଜରେ ଛାତିକୁ ମୁହଁ ପୋତିଲା । ୪ । ଚୁମ୍ବଶିଳ—ଚୁମ୍ବକ । ଚୁମ୍ବକ ଯେପରି ଲୁହାକୁ ଆକର୍ଷଣ କରେ, ତଥା ସେହିପରି ଅନଙ୍ଗକୁ ଆକର୍ଷଣ କରିଥିଲା । ଉରଜ-ସଙ୍କଟେ—କୁଚ ସନ୍ଧରେ । ୫ । କରରୁହ—ନଖ ।

ହେମ ବେନ ଉନ୍ନତ ଭେଦ    ବହେ କି କାଳନ୍ଦୀ ନଦୀ
ଚରମ-ଦେଶରେ ନୀଳକୁନ୍ତଳ ଲୁଲେ
କନକ-ଶଇଳ ତଟେ    ଗମେ କି ଚନ୍ଦ୍ରମା କଟେ
ନଶି-ଅଭିସାରୀ ଓଢ଼ି ଘନ-ଦୁକୂଳେ
ଦୃଷ୍ଟି କି ମୋ କଲା ବିଯୋଗ
ମୁଖ-ଶଶୀ ବିକାଶିଲେ ଦଶିବ ଦିଗ । ୬ ।
କୁଚ-ହେମଗିରିବର    ଉଚ୍ଚୁଁ କି ଉତ୍ସନୀ ଧାର
ତ୍ରିବଳି-ତ୍ରିବେଣୀ ସଙ୍ଗେ ଏ ପ୍ରେମରଙ୍କ
ତୋ'ଭାବ ଲଭିବା ପାଇଁ    ମାନସ-ହ୍ରଦରେ ଯାଇଁ
ଝାସିଲି ପବନ ଜଳେ ନାଭିରେ ମଜ୍ଜି
କାମ-ସୁଅ ଗଡ଼ାଇ ନେଲା
ଗଭୀର ନାଭି-ଭଉଁରି ବଧୂରି କଲା । ୭ ।
ଅବଲମ୍ବି ତୁମ୍ବୀ ଫଳ    ନିତମ୍ବ-ବିମ୍ବ ଯୁଗଳ
ଲଭି ମୁଁ ପାଇଲି କାମ-ନଦୀର ପାର
ଶୁଣିହଁ କାମ-ସନ୍ତାପେ    ତୋ କୁଚ ଶଙ୍କର ରୂପେ
ଧ୍ୟାନେ ତୋଷି ଥିଲାକୁ ହି ତୋ ପରସ୍ପର
କୃପା-ଲୋଳ-ଲୋଚନେ ଚାହାଁ
ନିଜ ଦାସ ଜନ ମନ କର ଉଷ୍ଠା । ୮ ।

୭·୧ :—ମନ ସମୁଦ୍ରରେ ଯାଇ (ଖ) ।

---

୬ । ହେମ—ସୁନା । ହେମ··ନଦୀ—ଦୁଇଟି ସୁନା ରଙ୍ଗର ପିଠିର ମଝିରେ ପଡ଼ିଥିବା ବାଳ ଯମୁନା ନଦୀର ଧାର ପରି । ନୀଳକୁନ୍ତଳ—ନେଳିଆ ବାଳ । ଘନ-ଦୁକୂଳ ଓଢ଼ି—ଅନ୍ଧାର ରୂପକ ଲୁଗା ଘୋଡ଼େଇ ହୋଇ । ନଶି-ଅଭିସାରୀ—ରାତିରୂପ ଅଭିସାରିକା । ୭ । ତ୍ରିବଳି—ଏଠାରେ ପେଟରେ ଥିବା ମୋଡ଼ଥିଲୁ ତ୍ରିବେଣୀ ଅର୍ଥାତ୍ ଗଙ୍ଗା, ଯମୁନା, ସରସ୍ୱତୀ ସଙ୍ଗେ ତୁଳନା କରାଯାଇ ଅଛି ।

ଲପନେ ବିଜିତ ଶଶୀ     ଚରଣେ ଶରଣ ପଶି
ଏଥୁ ଏକ କଳା ଯେନ ନଦେ ରହୁଛି
କରୁଣା ବିନୟ ଜନେ ତେଣୁ ସେ ତୋର ଲୋଚନେ
ମୁହିଁ ଯେ ଶରଣ ଜନ ରଖ ମାଗୁଛି !
ଭାଷ ପ୍ରିୟେ ! ମଧୁର ବାଣୀ
ବନପ୍ରିୟ ପ୍ରିୟ ଛାଡ଼ୁ ନବ ରମଣୀ । ୯ ।
ହର-ତପ ହତ କର     କାମ ଯା'ନ୍ତେ ହେମଗିର
ବହୁ କରେ ମୋହ-ପରିବାଦନୀ ଦେଲା
ଯାହା ବସି ବହୁଯୁଗ     ତୋ ରୂପେ କଲା ସଯୋଗ
ହୃଦୟରେ କାମ-ହେମ-ଭୂମୀ ଥୋଇଲା
କଣ୍ଠତଟେ ଖଞ୍ଜିଲା ଗୁଣା
ଚଞ୍ଚଳ କଟାକ୍ଷେ ମୁହିଁ ହୋଇଲା ବଣା । ୧୦ ।
ପ୍ରିୟେ ! ମୋ ବିନୟ ଯେନ     ଭାଷସି ମୃଦୁ ବଚନ
କନ୍ଦର୍ପ ମଦନ-ଭ୍ରାନ୍ତ ଅଭୟ କର
କପୋଳେ ମକରୀ ଲେଖ     ଚରଣେ ଅଳତା ଦେଇ
ସଫଳ କରିବ ମୋର ଏ ବେନି କର
ସୁଧାରସ ଅଧରୁ ଦେଇ
ଦାସ କର କିଣ ମୋତେ କମଳମୁହିଁ ! । ୧୧ ।

୯-୬ :—ଶୁଣ (ଗ), ଯେନ (ଖ) । ୧୦-୧ :—ତହିଁ (ଖ) । ୧୦ ୪ :—ଚଞ୍ଚଳ ମନ କଟାକ୍ଷେ ହୋଇଲି । ବଣା (ଗ) ୧୧-୬ :—ଗୁଫଳ (ଙ), ସଫଳ (ଗ) ।

---

୯ । ଛନ୍ଦେ—ନଖରେ । ବନପ୍ରିୟ—କୋକିଳ । ଏଠାରେ କୋକିଳ ସ୍ୱର ବାଣୀ ଠାରୁ ଭାଷାର ବାଣୀ ମଧୁର ହୋଇଥିବାରୁ ତାହା ଶୁଣି କୋକିଳ କୋକିଳାକୁ ଛାଡ଼ ।

୧୦ । ମୋହ ପରିବାଦନୀ—କନ୍ଦର୍ପର ବଣା । କାମ ହେମ ଭୂମୀ—କନ୍ଦର୍ପ ସ୍ତନାଦେ ଥିବା ସୁନାର ଭୂମି (ଏଠାରେ କୁଚ ଦ୍ୱୟକୁ ଲକ୍ଷ୍ୟ କରା ଯାଇଅଛି) ।

୧୧ । ମକରୀ—ମକର ପତ୍ର ଚିତ୍ର; ଓଷ୍ଠ ଓଠାପାନ୍ତ ।

ମୋର ମନୋରଥ ପୂରୁ ପ୍ରସନ୍ନେ କରନ୍ତ-ଋତୁ
ଆଜ୍ଞା ଦିଅ ପିକବାଣୀ ମଧୂର ସହୁ !
ଖଞ୍ଜି ଦ୍ୱାଦ୍ୱା ସର ସର ବୃଦ୍ଧି ମୋ ନାସ୍ଥଳ କର
ସାଧିବ ସପତ ସ୍ୱର କଣ୍ଠେ ଲଗାଇ
ଏକରସ କରିବ ମନ
ଥାଇ ହିଁ ନ ଥିଲା ପ୍ରାୟେ ହୋଇବ ଲୀନ । ୧୨ ।

ଦାରୁଣ ଦୁଷ୍ଟ ମଦନ ନ ରଖଇ ନିଜ ସ୍ଥାନ
ତାତ ସୁତ ମିତ ପ୍ରଭୁ ନ ଜାଣେ କିଛୁ
ଉଚିତ ବହିଲେ ଶିବ ଭୁ ତାହାଙ୍କୁ ଦେଲୁ ଜୀବ
ଦୋଷ ଦେଖି ଉପଗତ ଯେକ ମୃଗାଙ୍କ !
ମିତ୍ର ତାର କୁଟିଲ-ଇନ୍ଦୁ
ବିଷ ସଙ୍ଗେ ଜାତ କଲା ତାହାଙ୍କୁ ସିନ୍ଧୁ । ୧୩ ।

କୋକିଳ କାକ-ଭ୍ରମର ସମୀର ସର୍ପ ଆହାର
ଏ କାମର ପରଶୃର ପିଶୁନ ମଧୂ
ଏମାନେ ସେବିଲେ ତୋତେ ଭୁ ଅଟୁ ସରଳ ଚିତ୍ତେ
ଯେ ଯାହା ମାଗିଲେ ଦେଇ ଅଟ ପ୍ରବୋଧୂ
ମୋତେ ଦିଅ ଅଧର-ସୁଧା
ପର ଉପକାରୀ ଜନେ କରୁଣା-ଶୁଦ୍ଧା ! । ୧୪ ।

୧୨-୨ :—କଣ୍ଠରେ ବାଇ (ଗ) ।

---

୧୨ । ଏକରସ—ଏକାଗ୍ର । ୧୪ । କାକ-ଭ୍ରମର—କୋଇଲି । ପିଶୁନ—ଧୂର୍ତ୍ତ । ମଧୂ—ବସନ୍ତ । ସମୀର—ଦକ୍ଷିଣ ପବନ । କରୁଣା-ଶୁଦ୍ଧା—ଦୟାଗୁଣରୁ ଶୁଦ୍ଧା ।

ଏ ତୋର ସନ୍ଦେଶ ପାଇ        ବିଳମ୍ବ ମୁଁ କଲି ନାହିଁ
ବିଫଳ ମଉନେ କିବେ ହେଁଠ-ବଦନ
ତୁ ମୋର ଦେହ ଜୀବନ        ତୁ ମୋର ଭୂଷଣମାନ
ତୁ ମୋର ଇନ୍ଦ୍ରି ବିଷୟ ମନ-ସଦନ
ତୁ ମୋହୋର ମୁକୁଟ ଶିରେ
ତୁ ମୋର ସୁକୃତ ଫଳ ସୁଖ-ସାଗରେ । ୧୫ ।

ତୁ ମୋର ଶ୍ରୀଗୁରୁ ଚନ୍ଦନ        ତୁ ମୋର ଶିର-ବନ୍ଦନ
ତୁ ମୋର ମଦନ-ଜଳନିଧି ତରଣୀ
ତୁ ମୋ ଗଳେ ବନମାଳ  ତୁ ମୋହୋର ବୀର୍ଯ୍ୟ ବଳ
ତୁ ମୋର ଭବ-ବିଭବ-ସୁଖ-ସରଣି !
ତୁ ମୋହୋର ସବୁ ରମଣି !
ମୁଁ ତୋହର ପଟଗୃର କିବେ ନ ଗଣି । ୧୬ ।

ମଦନେ କାତର ହୋଇ        ଚତୋଇଲ୍ଲ ଗୃହୁଁ କହି
ଚରଣ ଧରନ୍ତେ କରେ ସୁଜାଣ ବାମା
ସାତୁକ୍ୟ ବିକାରେ ତନୁ        ବିକଳ୍ପ କୁସୁମ-ଧନୁ
ଉଠି ପ୍ରଣମିତ କଲା ଅସୁର-ଜେମା
ଭୁଜେ ଭିଡ଼ି ମଦନ-ସୁତ
ବଦନ ଚୁମ୍ବିଲ୍ଲ ହୋଇ ଉଲ୍ଲୁକ ଚିତ୍ତ । ୧୭ ।

୧୫-୧ :—ଅଦେଶ (ଖ) । ୧୭-୨ :—ତୁ ମୋର ବକ୍ଷେପ୍ ବନ୍ଦ (ଖ) ସାରେଣି (ଖ) ।

---

୧୫ । ମନସଦନ—ମନର ଅଶ୍ରୟ ସ୍ଥାନ । ୧୬ । ମଦନ ଜଳନିଧି—କାମ-ସମୁଦ୍ର ।
ଭବ-ବିଭବ-ସୁଖ-ସରଣି—ସଂସାରର ସୁଖସଂପତ୍ତିର ବାଟ । ୧୭ । ଚତୋଇଲ୍ଲ—
ଚଳାଇଲା । ସୁଜାଣ—ସୁଜ୍ଞ । ସାତ୍ତ୍ୱିକ ବିକାର—ସ୍ୱେଦ ରୋମାଞ୍ଚାଦି ବିକାର ।
କୁସୁମ ଧନୁ—କନ୍ଦର୍ପ ।

ଚିତ୍ରଲେଖା ବୋଲେ ବାଣୀ     ଶୁଣ ଯୁବା-ଶିରୋମଣି
ତୁ ପ୍ରଭୁ ନୀତି-ପଠନେ ସକଳ ଜ୍ଞାତା
ଉଚିତ ବିଧାନ ଯୋଗ     ବିଭା ହୋଇ କର ଭୋଗ
ବେଦୀରେ ତୁମ୍ଭର ଏହୁ ନବ ବନିତା
ଶୁଣି ବୀର ତେଜିଲେ କୋପ
ଗନ୍ଧର୍ବ-ବେଦୀରେ ହୋଏ ବିଭା ମଙ୍ଗଳ । ୧୮ ।

ଶୋଣିତପୁର-ସରୋଜ—     ବନେ ଉଦେ ଦ୍ୱିଜରାଜ
ତେସନେ ପ୍ରକାଶ ତହିଁ କୁମରମଣି
ଶଶଧର ଉଦେ ଦେଖି     ଯେସନେ କୁମୁଦ ସୁଖୀ
ତେମନ୍ତ ହୋଇଲେ ସେ ଗୋ ନବରମଣୀ
ବିଭା-ବାଦ୍ୟ ଶୁଭେ ବଢ଼ିଲେ
ମଙ୍ଗଳ ଉତ୍ସବ ଚିତ୍ରଲେଖା ପଢ଼ିଲେ । ୧୯ ।

ନନ୍ଦ ଗୋପସୁତ ହରି     କ୍ରୀଡ଼ା-ରସେ ଗୋପନାରୀ
ରତିରଙ୍ଗେ ରଙ୍ଗେର ପଣେ ଉତ୍ସୁକମତ
ତାହାଙ୍କ ଚରଣ ବେନି—     ସରସିଜ ଶିରେ ଘେନି
ମଧୁପ ଶିଶୁଶଙ୍କର ରସିଲେ ମତ
ଗୋପୀନାଥ ସଙ୍କଟ ନାଶ
ଉଷା-ଅଭିଳାଷ କହେ ଶଙ୍କର ଦାସ । ୨୦ ।

——:o:——

---

୧୯ । ଶୋଣିତ ପୁର ସରୋଜବନ—ଶୋଣିତ ପୁର ରୂପ ପଦ୍ମବନ। ଦ୍ୱିଜରାଜ—ଚନ୍ଦ୍ର । ଚନ୍ଦ୍ର କିରଣରେ ପଦ୍ମବନ ନ ଫୁଟି ମୁଦ୍ରି ହୋଇଯାଏ ବୋଲି କବି ପ୍ରସିଦ୍ଧି ଅଛି ।

ଇତି ସପ୍ତମ ଛାନ୍ଦର ଉଷା-ଉଲ୍ଲାସିନୀ ଟୀକା ସମାପ୍ତ

# ଅଷ୍ଟମ ଛାନ୍ଦ

---

ରାଗ—କେଦାର

ଚନ୍ଦ୍ରକେଳି ବାଣୀରେ ଗାଇବ ।

ଦୂତୀ ବଚନ ଶୁଣି ଅନିରୁଦ୍ଧ
ଯେଣେ ନାଶିକ ନୋହଇ ବିରୋଧ । ୧ ।

ତାଙ୍କ ବଲ୍ଲଭିଏ ଯହୁଁ ପଶିଲା
ତାହା ଦେଖି ସଖୀ ଅପସରିଲା । ୨ ।

ବାମୀ କାମିନୀ କୋଳରେ ବସାଇ
ତାକୁ ଉତ୍ସୁକ ଲାଜରେ ମିଶାଇ । ୩ ।

ତାର ତରଳ କୁଟିଳ ଅପାଙ୍ଗ—
ଫାନ୍ଦେ ପଡ଼ିଲା କି ଶିଶୁ-କୁରଙ୍ଗ । ୪ ।

କିସ ବୋଲିବ ତାହା ପାସୋରିଲା
ତନୁ ସଂକୋଚ ଲାଜ ପ୍ରସରିଲା । ୫ ।

ମୁଖ ଦେଇଛି ବଲ୍ଲଭ ଉଦରେ
କି ଏ ଶଶୀ ପଶିଲା ସମୁଦ୍ରରେ । ୬ ।

୪-୧ :—ଚଞ୍ଚଳ ତରଙ୍ଗ (ଖ) ତରଳ ଚଞ୍ଚଳ (ଗ) ।

---

୪ । ତରଳ—ଚଞ୍ଚଳ । କୁଟିଳ—ବକ୍ର । ଅପାଙ୍ଗ—ନେତ୍ର ପ୍ରାନ୍ତ । ୫ । ପ୍ରସରିଲା—ଘୋଟିଗଲା । ୬ । ଅନିରୁଦ୍ଧଙ୍କ ବର୍ଣ୍ଣ କୃଷ୍ଣ ତହିଁ ସମୁଦ୍ର ସହ ତୁଳନା, ଉଷା ମୁଖ—ଚନ୍ଦ୍ର ।

ତନୁ ପୁଲକ ଉଠେ ଘନ ଘନ
କମ୍ପେ ଅଧର ଉରଜ ଜଘନ । ୭ ।

ତନୁ ଶିଥିଳ ବାଣୀ ଅଶକତ
ଖସେ ବସନ କଟ୍ଟରୁ ଭୂଗତ । ୮ ।

ତାର ସଂକୋଚ ଭାବ ଜଳନିଧି
ତହିଁ ଭାସିଲା ଅନିରୁଦ୍ଧ ବୁଦ୍ଧି । ୯ ।

ଅତି ଆତୁରେ ବଚନ କାତର
କି କି କହି ହୁଡ଼େ ଗୃଠୁ ଉତ୍ତର । ୧୦ ।

ମୋତେ ରଖ ରଖ ପ୍ରାଣ-ସଙ୍ଗାତ!
ତୋର ଶରଣେ ନୋହୁ ଅପଘାତ । ୧୧ ।

ତୋର ଅମଳ-କଳାନିଧି-ମୁଖ
ମୋତେ ମଦନ-ଅନ୍ଧକାରୁ ରଖ । ୧୨ ।

ସଖି! ହସି କହ ମୃଦୁ ବଚନ
କାମ-ତାପକୁ ପୀୟୂଷ ସେଚନ । ୧୩ ।

କହୁଁ କହୁଁ କହିବାରେ ହୁଡ଼ିଲା
ଭୁଜେ ତୋଳି ଧରି ହୃଦେ ଭିଡ଼ିଲା । ୧୪ ।

ତହୁଁ ଲଲନା ଲୋଚନ ଫେଡ଼ିଲା
ସ୍ମର-ସାଗରେ ବିବେକ ବୁଡ଼ିଲା । ୧୫ ।

୭-୨ :—ପୁଲକେ, ପଢ଼େ, (ଖ) । ୮-୧ :—ତନୁ ଶିଥିଳ (ଗ) । ୮-୨ :—ତହିଁ ବୁଡ଼ିଲ (ଖ) । ୧୦-୧ :—ରତ (ଖ) ।

---

୭ । ଉରଜ—କୁଚ । ୮ । ଶିଥିଳ—ଦୁର୍ବଳ । ଅଶକତ—କ୍ଷୀଣ । ୧୧ । ଅପଘାତ—ଅକାଳ ମରଣ ।

ଭୁଜେ ଭୁଜେ ଆଲିଙ୍ଗନ ପଡ଼ିଲା
ଶିଶୁଭାବ ଅନଙ୍ଗ ଓହାଡ଼ିଲା । ୧୬ ।

କାମ-ଜଳେ ତନୁ ବୁଡ଼ ରୋମାଞ୍ଚେ
କଣ୍ଠି ସୀତ୍କାରେ କୋଳ ନ ମୁଞ୍ଚେ ।୧୭।

ନବଘନେ କି ନିଶ୍ଚଳ ବିଜୁଳି
ନୀଳ କଷଟି ଯେଷ୍ଣେ ହେମ ଝୁଲି । ୧୮ ।

ପୁଣି ଅଙ୍ଗନା ଚୁମ୍ବିଲା ଅଜାଗେ
ଯେଣୁ କାମୀ ହୃଦରେ କାମ ଜାଗେ ।୧୯।

ତାକୁ ଅଧର-ମଦର ବାଧିଲା
କାମଲଜ ବଇରୀ କି ସାଧିଲା । ୨୦ ।

ନାନା ବନ୍ଧେ ରତିରସେ ରସିଲେ
କାମକଳା କୁଶଳ ଦରଶିଲେ । ୨୧ ।

ଅତି କୁଶଳ କାମଶାସ୍ତ୍ର ଫଳ
ତାଙ୍କ ପତ୍ନୀରେ ହୋଇଲା ସୁଫଳ । ୨୨ ।

ସେ ଯେ କୁମାରୀ କୁଞ୍ଚିତ ଲୋଚନ
ଖର ନିଶ୍ୱାସ ତନୁ କମ୍ପେ ଘନ । ୨୩ ।

୧୯-୧—ଯେଣୁ ଅନଙ୍ଗ ପୀଡ଼ିଲା (କ) ।

---

୧୭ । ସୀତ୍କାର—ଇଷି ଇଷି କଥା କହିବା ।

୧୮ । ହେମ-ଝୁଲ—ସୁନାର ଶୋଭା ।

୧୯ । ଅଜାଗେ—ଅଜଣା ଛବରେ, କାମ ଖେଳରେ ।

୨୧ । ଦରଶିଲେ—ଦେଖାଇଲେ ।

ଆଲିଙ୍ଗନେ ଶିଥିଳ ମୃଦୁ କର
ଓଷ୍ଠ ନୀରସ ଲୁଳିତ ଚିକୁର । ୨୪ ।

ପୋଛି ହୋଇଲା ଲୋଚନ ଅଞ୍ଜନ
ଝାଳେ ଲିଭିଲା କପାଳୁଁ ଚନ୍ଦନ । ୨୫ ।

ନଖ ଦଂଶନ ଲୋହିତ ପ୍ରକଟେ
ସ୍ୱେଦବିନ୍ଦୁ ନିଚୟ ଛୁଟିତଟେ । ୨୬ ।

କରିକୁମ୍ଭ ବିଦାରି ମୃଗପତି
କମ୍ପେ ଛାଡ଼ି ଯାଇଛି ଗଜମୋତି ? । ୨୭ ।

ନୀଳ ଅଳକା ଲୁଲେ ସ୍ୱେଦ-ଭାଲେ
ଇନ୍ଦୁବିମ୍ବ କି ଭେଜି ରାହୁ ଗଲେ ? । ୨୮ ।

ତାହା ଦେଖି ନିବର୍ତ୍ତିଲା ମନୋଜ
ବାସ ସଙ୍ଗତେ ଆବୋରିଲା ଲାଜ । ୨୯ ।

ଚିର ବିରହେ ପୂରିଲା ମନୋରଥ
ତହିଁ ସମାନ ସୁବୋଧ ସୁରତ । ୩୦ ।

ତହୁଁ ଷଣେକେ ଜାତ ଯହିଁ ରସ
ତାହା ବଚନେ କେହୁ କରେ ଶେଷ ।୩୧।

---

୨୪ । ଶିଥିଳ—ଢିଲା । ନୀରସ—ଶୁଖିଲା । ଲୁଳିତ ଚିକୁର—ବାଳ ଫିଟି ଲୁଟିବା ।

୨୭ । କରିକୁମ୍ଭ—ହାତୀ ମୁଣ୍ଡରେ ଥିବା କଳସ । ମୃଗପତି—ସିଂହ । ଏଠାରେ ନଖକ୍ଷତଜନିତ ରକ୍ତିମା ଓ ଝାଳବିନ୍ଦୁକୁ କବି ବର୍ଣ୍ଣନା କରୁଅଛନ୍ତି କି ହାତୀ କଳସକୁ ସିଂହ ବିଦାରି ଗଜମୋତି ବାହାର କରି ଦେଇଅଛି କି ?

୨୯ । ସ୍ୱେଦ ଭାଲେ—ଝାଳ ବୋହୁଥିବା କପାଳରେ ।

୩୦ । ସୁବୋଧ—ଶାନ୍ତ ।

ତନ୍ତୁଁ ଖଣ୍ଡୁ ଚଢାଇ ଚରକାଲେ
ଚନ୍ଦ୍ର ଚମକେ ସୀମା ଲାଜଶୋଳେ । ୩୨ ।

ମୁଁ ତ ନ ନ କଲି ନ ନ ବୋଇଲି
କାନ୍ତ ନ ନ କଲେ ତାହା ସହିଲି । ୩୩ ।

ବାହୁ ଦଇବ କାମ ବଢ଼ମଣ
ତନ୍ତୁଁ ହରଷ ଜାତ ହୋଇଯୃ ପୁଣ । ୩୪ ।

ସେ ଯେ କୁମରମଣି-ଶିରୋଭୂଷା
ଚନ୍ଦ୍ରକରଣେ କୋଳେ ବସି ଉଷା । ୩୫ ।

ନିଜ ଦୁକୂଳେ ବାଏ ମନ୍ଦ ମନ୍ଦ
କରେ ପୋଛଇ ମୁଖ-ଅରବିନ୍ଦ । ୩୬ ।

ତାକୁ ସୁବେଶ କରେ ଅନୁସର
ଶିରେ ରଞ୍ଜିତ କୁନ୍ତଳ କବରୀ । ୩୭ ।

ଚଷ୍ଟ ତରଳତର ମୋତିଲତା
କାମ ଛିଣିଲା କି ଯଶ-ବନିତା ? । ୩୮ ।

ଦିବ୍ୟ ବସନ କଲା ଆଚ୍ଛାଦଲା
ଉତ୍ତକଳା ଭିଏ କି ତା ମୁଦ୍ଦିଲା ? । ୩୯ ।

୩୪-୧ :—ଜାଣି (ଗ), ଜାଣୁ (ଖ) ।
୩୯-୨ :—ମୂଢ଼ ଦେବ (ଖ) ।

---

୩୨ । ଚରକାଲେ—ବନ୍ଧୁ ସମ୍ପୁଟରେ । ଖଣ୍ଡି ଚଢାଇ—ଖଣ୍ଡ ମାନ ଲୁଚିପାରି ।
୩୬ । ଦୁକୂଳେ—ଲୁଗାରେ ।
୩୮ । ଚଷ୍ଟ—ପେଣ୍ଡି କୁଡ଼ାରେ । ତରଳତର—ଝଲ ଝଲ ବା ଜଳ ଜଳ ଦେଖା ଯାଉଥିବା । ମୋତିଲତା—ମୋତି ମାଳା । ଯଶ ବନିତା—ଯଶ ରୂପ ସ୍ତ୍ରୀ ।

ଗଣ୍ଡେ ମକରୀ ମୃଗମଦ ଜ୍ୟୋତି
କର୍ଣ୍ଣେ ତାଟଙ୍କ ନାସେ ଗଜମୋତି । ୪୦ ।

ତଥି ଚୁମ୍ବଇ ଅଧର ପଙ୍କିଳ
କ ଯେ ଗୁରୁ ମିଳଲେ ଶଶିକୋଳ ? ।୪୧।

କରେ କଙ୍କଣ କଣ୍ଠରେ ମୁକୁତା
ଭାଲେ ସିନ୍ଦୂର ବିନ୍ଦୁ ଶୃଗୁ ଚଢା । ୪୨ ।

ପୀନ କୁଚରେ ପତ୍ରାବଳି ଲିହି
ତହିଁ ମନକୁ ଥୋଇଲା ଲୁଗୃଇ । ୪୩ ।

ଚନ୍ଦ୍ର ଜିଣଇ ସବୁ ପରିମଳ
ତହିଁ ଚନ୍ଦନ ଭୂଷିତ କି ଫଳ ? । ୪୪ ।

ନାନା ଭୂଷଣ ଶରୀରେ ଖଞ୍ଜିଲା
ପାଦେ ମର୍କତ ନୂପୁର ରଞ୍ଜିଲା । ୪୫ ।

ତାର ସ୍ୱଭାବେ ପଦ ତଳ ରଙ୍ଗ
ତଥି ଅଙ୍କିତ ଅଲତା ସୁରଙ୍ଗ । ୪୬ ।

ନଦ୍ୱେ ଆନନ-ଜ୍ୟୋତି ବିକଶିଲା
ଗୃହିଁ ପ୍ରଣାମ ସୁନ୍ଦର ହସିଲା । ୪୭ ।

୪୧—ତହିଁ ବିମ୍ବାଧର କି ପଙ୍କିଳ । କି ଯେ ଶଶୀ ମିଳଲେ ଗୁରୁକୋଳ (ଟ) ।
୪୨-୨:—ଚନ୍ଦନ (ଖ, ଗ) ।
୪୫-୨:—ପାଦେ ହଂସକ ନୂପୁର (ଗ) ।
୪୭-୨:—ପ୍ରଲମ୍ବ (ଖ) ।

---

୪୦ । ମକରୀ—ମକରାକାର ଚିହ୍ନ । ମୃଗମଦ ଜ୍ୟୋତି—କସ୍ତୁରୀର କାନ୍ତି ।
୪୧ । ପଙ୍କିଳ—ସୁନ୍ଦର ବା ଲିପ୍ତ ।୪୪ । ପରିମଳ—ସୁଗନ୍ଧ ।

ଦିବ୍ୟ ମୂର୍ତ୍ତିରେ ଯାହାଙ୍କ ପ୍ରଭାବମ୍
ତହିଁ ସାତ୍ତ୍ୱିକ୍ୟ ଭାବେ ଦେଲା ଜୃମ୍ଭ । ୪୮ ।

ଯାହାଙ୍କ ସ୍ମିତବଦନା ଶିର ପୋତି
ତାହା ବଚନେ କେ କହିବ ରୀତି । ୪୯ ।

ଅପସରନ୍ତା କାମ ଲେଉଟିଲା
ତାହା ଭାବ ଅବଯବ ଘୋଟିଲା । ୫୦ ।

କଏ ସୁବେଶ ଯାହାଙ୍କ ରତିପତି
ପୁଣି ଶଙ୍କର ଜଣିମାକୁ ମତି । ୫୧ ।

ତହିଁ ବିକାର ଉପୁଜିଲା ଯେତେ
ସବୁ ଦିନକୁ ରହୁ ସେହୁ ଚିତ୍ତେ । ୫୨ ।

ଯୁଗ ଯୁଗାନ୍ତେ କେହୁ ପାସୋରିବ
ସେ ଯେ ବିଷୟ ବିବେକ ହରିବ । ୫୩ ।

ଶିଶୁଶଙ୍କର ଅତି ଭକ୍ତ ମତି
ତାର ଶରଣ ଯନ୍ତୁ ଗୋପୀପତି । ୫୪ ।

ତାଙ୍କୁ ଚିନ୍ତୋଇ କହେ ଜନ୍ମ ରସ
ଆଠ ଛାନ୍ଦ ଏ ଉଷା-ଅଭିଲାଷ । ୫୫ ।

---

୪୯-୨ :—କେବ୍ର ଭନ୍ଦ୍ର ଚେତ (ଗ) ।

---

୪୮ । ପ୍ରତିବନ୍ଧ—ଛାନ୍ଦ । ଇତି ଅଷ୍ଟମ ଛାନ୍ଦର ଉଷା-ଉତ୍କ୍ରାସିନୀ ଟୀକା ସମାପ୍ତ ।

# ନବମ ଛାନ୍ଦ

---

ରାଗ—ବଙ୍ଗଳାଶ୍ରୀ

ଯୁବତୀ-କୁଳ-ଶିରୋମଣି ସୁବେଶ ପୁରୁଷ-ଭୂଷଣ ହାର
ଚନ୍ଦ୍ର କରଣେ ମଣିମୟ ପଲଙ୍କେ ଚଳୁକେ କମଳ-କର । ୧ ।

ବିଧୁବଦନା କ୍ରୀଡ଼ାରେ ହେଠମାଥ ଦେଖିଣ ମଦନ ମତ୍ତେ
ବିନୟଭାବେ ମନସିଜ-ନନ୍ଦନ କହଇ ଶୁଣୁ ଅଗ୍ରତେ । ୨ ।

ଚନ୍ଦ୍ରଶାଳା ପୁରେ ଶୋଇଥିଲୁ ପ୍ରିୟେ ଗଜଦନ୍ତ-ପଲଙ୍କରେ
ପୂର୍ବ ତପ ବଶେ ଚକ୍ଷୁ ମୋ ପଡ଼ିଲା ତୋ କୁଚ ରସକୂପରେ । ୩ ।

ନିଦ୍ରାଗତ କାମ ପ୍ରବୋଧ କରଇ ଯେବଣ ନୂପୁର ଧ୍ୱନି
ସପନେ ଶୁଣି ମୋ ସଫଳ ଶ୍ରବଣ ମତ୍ତ-ମରାଳ-ଗମନୀ । ୪ ।

ପୀୟୂଷ-ରସଜ କୁବଳୟ ଦଳ ବାଣ୍ଟିଲୁ ଅପାଙ୍ଗ ଘାତେ
ବନ୍ଧୁକ ଅଧରେ ମଧୁର ହାସ ମୋ ଥୋଇଲୁ ହୃଦୟ ଗତେ । ୫ ।

୧-୨ :—ରତ୍ନମୟ (ଖ, ଗ) । ୩-୧ :—ଶୋଇଥିଲ ପାଖେ ଦନ୍ତ ପଲଙ୍କ ଉପରେ (କ) । ଶୋଇଥିଲି ସଖି ! ରତ୍ନ ପଲଙ୍କ ଉପରେ (ଗ) । ୩-୨ :—କୂପ (ଗ) । ୫-୧ :—ରସିକ (ଖ, ଗ) ।

---

୧ । କମଳକର—ପଦ୍ମହସ୍ତ । ୨ । ବିଧୁବଦନା—ଚନ୍ଦ୍ରମୁଖୀ । ମଦନମତ୍ତେ—କାମରେ ମତ୍ତ ହୋଇ । ମନସିଜ ନନ୍ଦନ—ଅନିରୁଦ୍ଧ ।

୪ । ନିଦ୍ରାଗତ କାମ—ଶୋଇଥିବା ମଦନ । ପ୍ରବୋଧ କରଇ—ଉଠାଇ ଦିଅଇ ।

୫ । ପୀୟୂଷ ରସଜ—ଅମୃତ ସହିତ ଜାତ, ଜଳ । କୁବଳୟଦଳ—ନୀଳ କଇଁ ପାଖୁଡ଼ା । ଅପାଙ୍ଗ ଘାତେ—ବାଙ୍କ ଚାହାଁଣି ମାରିବାରେ । ବନ୍ଧୁକ ଅଧରେ—ବନ୍ଧୁଲି ଫୁଲ ପରି ଲାଲ ଓଠରେ ।

ମଦନ ଅଳସ ହୋଇ ବାଇ କର କବଖରେ ଦେଲୁ ହାରୁ
ନବଘନକୁ ଆଲିଙ୍ଗନ କଲା କି କମଳ ହେମଗିରିରୁ । ୬ ।

ଅଙ୍ଗ ପଢଣୀ ମନ୍ଦ ବାୟେ ଉଡ଼ି ମୋ ଜଗତ-ଶୋଭା-ବନିତା
ଫୁଟକସୁନ୍ଦର ଗିରିଶିଖରେ କି ଫୁଟିଲେ ତଡ଼ିତ ଲତା । ୭ ।

ହୃଦୟ ମାନ-ସରୋବର ସୁଗନ୍ଧ କନକ କମଳମୁଖ
କୁରଙ୍ଗ ମଦେ ଭୃଙ୍ଗ ବାଡ଼ ଦେଲା କି ଇନ୍ଦୁରେ ରାହୁରେଖ ।୮।

ଚନ୍ଦ୍ର ପ୍ରାୟେ ମଣି ଲୋଭରେ ବସିଲେ କି ଚକୋର ବେନି ଲୋଚନ
ବିରୋଧ ଛାଡ଼ି ନବ ଶଶୀ ଶରଣ ତେଣୁ ପାଇଲା ମୋଚନ । ୯ ।

ମୋ ମନେ ମଣିଲି ଭ୍ରୂଲତା କୋଦଣ୍ଡ ପକ୍ଷଣ କଟାକ୍ଷ-ବାଣ
ବସନ୍ତ ସହିତ ବିଜୟ କଲେ କି ପ୍ରତକ୍ଷେ ଦେବ ମଯ୍ୟାଣ । ୧୦ ।

୯-୨ :—ପଦେ (ଗ) ।

---

୭ । ଅଙ୍ଗ ପଢଣୀ—ଦେହରେ ଥିବା ଶାଢ଼ୀ । ଜଗତ ଶୋଭା—ପୃଥିବୀର ଶୋଭା ବା ଅତି ସୁନ୍ଦରୀ । ଏଠାରେ ଉଷାର ସ୍ତନାଗ୍ରକୁ ଫୁଟକ ଗିରିଶିଖର ଏବଂ ଅଙ୍ଗ ପଢଣୀକୁ ବିଜୁଳି ବୋଲି ବର୍ଣ୍ଣନା କରା ଯାଇଅଛି ।

୮ । ଏଠାରେ ଉଷାର ହୃଦୟକୁ ମାନସରୋବର ସଙ୍ଗେ ଏବଂ ତାର ମୁହଁକୁ ସୁନା ପଦ୍ମ ସଙ୍ଗେ କଳ୍ପନା କରା ଯାଇଅଛି । କୁରଙ୍ଗ ମଦେ—କସ୍ତୁରୀରେ । ରାହୁରେଖ—ରାହୁର ବର୍ଣ୍ଣ ଯେ କଳା, ତାର ରେଖା ଅର୍ଥାତ୍ ଚିହ୍ନ ।

୯ । ବିରୋଧ ଛାଡ଼ି—ମନରୁ ସନ୍ଦେହ ଗଲା ଅର୍ଥାତ୍ ଉଷା ମୁଖ ଓ ଚନ୍ଦ୍ର ଉଭୟେ ସମାନ ଥିବାରୁ କେଉଁଠାରେ ଚକୋର ବସିବ—ମନରୁ ଏ ପ୍ରକାର ସନ୍ଦେହ ଚାଲିଗଲା । ନବଶଶୀ ଶରଣ—ନୂଆ ଶଶୀ ଯେ ଉଷାର ମୁଖ, ସେଥିରେ ଆଶ୍ରୟ ନେଲା ।

୧୦ । ଭ୍ରୂଲତା-କୋଦଣ୍ଡ—ଭ୍ରୂଲତା ରୂପ ଧନୁ । କଟାକ୍ଷ ବାଣ—ବାଙ୍କ ଚାହାଣି ରୂପ ଶର । ପକ୍ଷଣ—ପକ୍ଷିଣ । ଦେବ ମସ୍ଥାଣ (ମଦନ)—କାମଦେବ ।

ଅଧର ବନ୍ଧୂକ, ଦାଡ଼ିମ୍ବ ଦଶନ, ବାସନ୍ତୀ ଲପନ ବାସ ;
ତିଳ କୁସୁମ—ନାସା ବାଣ ଭରତି ଥୋଇ ଅଛି ନିଜ ପାଶ । ୧୧ ।

କୁନ୍ତଳ କୁନ୍ତଳ କବରୀ ଉପରେ ଶୋଭିଛ ମୁକୁତା ଜାଲି
ବସନ୍ତ ମନ୍ତ୍ରେ ଛୁଇଁଅଛି ଫୁଟିଲା କି ନୀଳ ତମାଳ-ବଲ୍ଲୀ । ୧୨ ।

କର୍ଣ୍ଣ ଅବତଂସ କିଂଶୁକ ପଦ୍ମପୃେ ଶ୍ରବଣପୁଟେ ଫାଟିଲି
କମଳ ଢାପ ବେଣ୍ଡୋଲି ସେବତି କି ଦେଖି ମୋର ମନ ଭୁଲି ।୧୩।

ସୁରଭ ପବନ ନିଶ୍ୱାସେ ଅଛି କି କଣଳସ୍ଥ କର ପାଦ
ମେଖଳା ଘଣ୍ଟି ନାଗେଶ୍ୱର କଢ଼ି କି ନୂପୁର ମଧୂପ ନାଦ । ୧୪ ।

ନାସା ଗଜମୋତି ମଲ୍ଲୀ କଟି ପ୍ରତି ସୁସ୍ୱର ବାଣୀ କୋକିଳ
କଳେବର କାନ୍ତି ଶିରୀଷ କେତକୀ, ମୃଣାଳ ବାହୁ ଯୁଗଳ । ୧୫ ।

ରସାଳ-ନବ—ମୁକୁଳ କରରୁହ ଦେଖି ମୋ ଚକିତ ମନ
ସଧୀରେ ଶୃଙ୍ଗାରେ ହୃଦରେ ପଡ଼ିଲା ମୋହ ବିଶିଖ ଲୋଚନ ।୧୬।

୧୩-୨ :—ନବ ତମାଳ ବଲ୍ଲୀ (ଖ, ଗ) ।
୧୬-୨ :—କେତକୀ ଶିରୀଷ (ଖ, ଗ) ।

---

୧୧ । ଲପନ ବାସ—ମୁଖର ସୁବାସ । ବାଣ ଭରତି—ଶରତୂଣୀ ।

୧୩ । କର୍ଣ୍ଣ ଅବତଂସ—କାନର ଅଳଙ୍କାର । କିଂଶୁକ—ପଳାଶ ଫୁଲ । ଢାପ—କାନର ଅଳଙ୍କାର ବିଶେଷ । ବେଣ୍ଡୋଲି—ଅଳଙ୍କାର ବିଶେଷ ।

୧୪ । ମେଖଳା ଘଣ୍ଟି—ଅଣ୍ଟାମୁଡ଼ାର ଘଣ୍ଟି ।

୧୫ । ଏଠାରେ କୋମଳତା ଗୁଣରୁ ଦେହକୁ ଶିରୀଷ ଫୁଲ ସଙ୍ଗେ ଏବଂ ଗୌର ବର୍ଣ୍ଣ ହେତୁରୁ ଦେହକୁ କେତକୀ ସଙ୍ଗେ ତୁଳନା କରାଯାଇ ଅଛି । ମୃଣାଳ—ପଦ୍ମ ନାଡ଼ ।

୧୬ । ରସାଳ ନବ ମୁକୁଳ—ଆମ୍ବ ଗଛର କଅଁଳ ବଉଳ । କରରୁହ—ନଖ । ମୋହ ବିଶିଖ ଲୋଚନ—ମୋହ କରିଦେବା ଶର ହେଲା ଆଖି ।

ଲେଉଟାଇ ଭୂ ତା ନେଇ ନ ପାରିଲୁ ଓଷ୍ଠାରନ୍ଧ୍ରେ ଲାଗେ ପ୍ରାସ
ସ୍ନେହ-ସୁଧା-ରସେ ରସିଥିଲୁ ବୋଲି ଜୀବନ ନ କଲୁ ନାଶ । ୧୭ ।

ଦମ ଦମ ତନୁ ପୁଲକ ଉଠିଲା ଅଧର ଶୁଖିଲା ମୋର
ପଢ଼ି ନ ଶୁଣିଲା ପାଠ ପାସୋରିଲା ପରସ୍ପେ କଲି ଗୋଚର ।୧୮।

ଉପାସ୍ପେ ନାହିଁ ମୁ କ ବୁଦ୍ଧି କରିବ ଦଇବେ ଦଶିଲା ବୁଦ୍ଧି
ଘଲଙ୍କ ତେଜ ଉଦବେଗେ ଉଠିଲା ତରୁଣୀ କରୁଣାନିଧି ।୧୯ ।

କର ଥରହର ଖଳତ ଗଡ଼ ତୋ ଚରଣେ ପଡ଼ିବା ବେଳେ
ମୋ ଦେହେ ଚେତନା ନାହିଁ ପ୍ରାଣବନ୍ଧୁ ! ଭିଡ଼ିଲୁ ଭୁଜଯୁଗଳେ ।୨୦।

ପଲଙ୍କ ଉପରେ ନେଇ ବସାଇଲୁ ଲାଜହିଁ ଦୂର କରିଣ
ଲପନ ଗ୍ରହି ତୋ ସଫଳ କଲି ମୋ ମଦନ-ନନ୍ଦନ ପଣ । ୨୧ ।

ଅମୃତ ଭୋଜନ ସ୍ୱାଦ ମୁ ବାନ୍ଧିଲି ଅଧର ମଧୁର ପାନେ
ମଧୁପ ମାଲତୀ ଭାବ ମୁଁ ଜାଣିଲି ଏ ତୋର ଗଣ୍ଡ ଚୁମ୍ବନେ । ୨୨ ।

ତ୍ରିଭୁବନ-ନାଥ କୋଳରେ ବସି ମୁଁ ନିରନ୍ତରେ କରେ ରଙ୍ଗ
ସେ ଫଳ ସୁଫଳ ହୋଇଲା ସଜନ ! ଲଭିଲି ତୋ ଅଙ୍ଗ ସଙ୍ଗ ।୨୩।

ମଦନ ରୋଷେ କଟକୁମ୍ଭ-କୁଚକୁ କରଜେ କଲି ପାଟଳ
ପୀଡ଼ା ପାଉ ବୋଲି ନିର୍ଦ୍ଦରେ ଭିଡ଼ିଲି ନ ଛାଡ଼ିଲି ତରକାଳ ।୨୪।

କାହିଁ ଅଛୁ ତାକୁ ଦେଖିବ ବୋଲି ମୁ ବସନ ହିଁ କଲି ଦୂର
ମୋହେ ନ ଜାଣିଲି ମଦନ ଭଣ୍ଡାର ମନ୍ତ୍ରଭରେ କଲି ଜୁର । ୨୫।

୧୭-୨ :—ଇରେ (ଗ) ।

---

୧୯ । ତରୁଣୀ କରୁଣା ନିଧି—ତରୁଣୀମାନଙ୍କ ମଧ୍ୟରେ ଅତି ଦୟାବତୀ ।
୨୦ । ଖଳତ ଗଡ଼—ଗ୍ଳଲିବା ସମୟରେ ଗୋଡ଼ ଖସିବା ।
୨୩ । ତ୍ରିଭୁବନ ନାଥ—ଶ୍ରୀକୃଷ୍ଣ ।

ରତି ଜନ୍ମ ଯାହା ମଦନ ବହିଲେ ତାହା କେମନ୍ତେ ପାସୋରି
ଚଉଷଠି କଳା ବିବିଧ ବନ୍ଧେ ତୁ ତୋଷିଲୁ ନବ ନାଗରି ! । ୨୬ ।

ତର ମନୋରଥ ପୂର୍ଣ୍ଣ କରି ତୋତେ ପ୍ରବେଶ କରନ୍ତେ ବସି
ଚଣ୍ଡାଳ ବିହି ବିୟୋଗ କରାଇଲା ପ୍ରଭାତ ହୋଇଲା ଜାଣି । ୨୭ ।

ବଚନ ଲୋଚନ ମନ ଏ ତିନହେଁ ବିଷୟ ଭାବକୁ ଘେନ
ଦେହ ଛାଡ଼ି ମୋର ସବହେଁ ଅଇଲେ ତୋହ ସଙ୍ଗତେ ଭାବନ ! । ୨୮ ।

ପ୍ରଥମେ କାତର ଦେଖି କରି ମୋତେ ଆଶ୍ୱାସି ବୋଇଲୁ ଯାହା
ପ୍ରାଣ ରଖିଥିଲି ମନ୍ତ୍ର କରି ପ୍ରିୟେ ଜପୁଥିଲି ଯହୁଁ ତାହା । ୨୯ ।

ତରୁଣୀମଣି ଚିତ୍ରପଟ ଘେନ ମୁଁ ଲିହନ୍ତେ ତୋ ରୂପଲୀଳା
ଇନ୍ଦୁ ଦର୍ଶନେ ଚନ୍ଦ୍ରମଣିମତେ ମୋ ହସ୍ତରୁ ସ୍ୱେଦ ଗଳିଲା । ୩୦ ।

ବିଧାତା ଗଢିଲା ତୋତେ ନ ଦେଖଇ ଯହୁଁ ସମ ନାହିଁ ଆନ
ଧଇଲେ ଚିତ୍ରେ ଧରିବା ନୁହଇ ତ ମୋରେ ନ ଗଲା ଲେଖନ ।୩୧।

ଲୋଚନପୂରେ ମୁଁ କିଛି ନ ଦେଖଇ ଦେଖଇ ତୋ ରୂପରେଖା
ଦରହାସ ହୋଇ ମୁଖ ତୋଳ ପ୍ରିୟେ ! ପ୍ରସନ୍ନ ସଦୟେ ଦେଖା ।୩୨।

ଅବନୀ ତପ ଏତେକେହେଁ ସଫଳ ମୋତେ ଶୁହୁଁ କି ନା ଷଣେ
ବାଞ୍ଛିତ ଶୃଣ୍ଟ ଶୁଣିଣ ରାମା ହସି ଶୁହିଁଲା ନୟନ କୋଣେ । ୩୩ ।

୨୬-୧ :—ରତିଶାସ୍ତ୍ର ଯାହା ମଦନେ ଲିହିଲେ ତାହା କେମନ୍ତେ ସୁମରି (ଶ) । ୨୭-୨ :—ତ (ଶ) । ୩୧-୨ :—ଧଇଲେ ମନରେ ଧର୍ମ ନୋହଇ ମୋମୋରେ ନ ଗଲା ଲେଖନ (ଶ) ।

---

୨୮ । ବିଷୟ ଭାବକୁ—ନିଜ ନିଜ ଗ୍ରାହ୍ୟ ପଦାର୍ଥକୁ । ୩୦ । ରୂପ ଲୀଳା—ରୂପର ଭଙ୍ଗି । ୩୨ । ଲୋଚନପୂରେ—ଲୋଚନ ସମ୍ମୁଖରେ । ରୂପରେଖା—ରୂପଚିହ୍ନ । ପ୍ରସନ୍ନ ସଦୟେ—ଖୁସିରେ ଦୟା କରି । ୩୩ । ଅବନୀ ତପ—ପୃଥିବୀର ତପସ୍ୟା ।

ବାଳାର ସ୍ନେହ ରଜନୀ ପରକାର ଲାଜ ଅନ୍ଧାରେ ମିଳଣି
ପ୍ରଣୟ ସୃଷ୍ଟି ଚାଟୁଳି ଚନ୍ଦ୍ରେ ତାହା ପ୍ରକାଶେ ଚତୁର ଜନ । ୩୪ ।

ଲାଜ-ତମ ଛାଡ ପ୍ରକାଶ ହୋଇଲେ ହସଇ ଗମନ ବାଟ
ଅଗମ୍ୟ ଭୂମିକି ଗମନ୍ତି ରସିକେ, ଫିଟଇ କାମ-କବାଟ । ୩୫ ।

ଏଥୁ ଅନନ୍ତରେ ଶଙ୍ଖ ଧ୍ୱନି ଫୁରେ, ତାମ୍ରଚୂଡ଼ କରେ ଧ୍ୱନି
ନିତ୍ୟ କର୍ମ ସାରି ପଲଙ୍କେ ବିଜୟେ କୁମର ସଙ୍ଗେ କାମିନୀ । ୩୬ ।

ଚନ୍ଦ୍ରଲେଖା ସ୍ୱାଇ ବିଶ୍ୱାସ ପୀରତି ବହୁତ ପ୍ରଶଂସା କରି
ଦ୍ୱାର ନିରୂପଣ ତାହାରେ ବହିଲେ ଜଗିଲା ସେହୁ ଯାହାସି । ୩୭ ।

ରମଣୀ ରଞ୍ଜନ ଅମୃତ ଯୋଗାଡ଼ ମଣୋହି କଲେ କୁମର
କର୍ପୂର ତାମ୍ବୂଳ କୁଙ୍କୁମ ଲେପନ ଉଚିତ ବିଧି ବେଭାର । ୩୮ ।

ଏମନ୍ତେ କେତେହେଁ ଦିବସ ବଞ୍ଚିଲେ ବିବିଧ ବିଳାସ ରଙ୍ଗେ
ଏକତାରେ ଚକ୍ଷୁ ଭାଙ୍କି ନ ପାରିଲେ ମନ ଗରୁ ଅନୁରାଗେ । ୩୯ ।

ହର-ତପ-ଘାତ ହରଣ-ଚଞ୍ଚଳ-ଲୋଚନ କମଳାପତି !
ଶିଶୁ ଶଙ୍କର ତବ ପାଦେ ଶରଣ ଫେଡ଼ ହେ ମୋର ଦୁର୍ଗତି ।୪୦।

---

୩୪ । ଏଠାରେ ବାଳା ଅର୍ଥାତ୍ ନବ ଯୁବତୀମାନଙ୍କର ସ୍ନେହକୁ ରାତ୍ରି ବୋଲି କବି ବର୍ଣ୍ଣନା କରିଅଛନ୍ତି । ସେ ରାତ୍ରିରେ ଲାଜ ଅନ୍ଧାର ଏବଂ ଚନ୍ଦ୍ରର ଜନକର (ରାତ୍ରି ଶେଷରେ ଉଦିତ) ପ୍ରଣୟ ସୃଷ୍ଟି ଚାଟୁଳି ବଚନ ଅର୍ଥାତ୍ ପ୍ରେମବୋଲା ବା ପ୍ରେମମିଶା ଖୋସାମତ କଥା ଚନ୍ଦ୍ର ସ୍ୱରୂପ ଅଟନ୍ତି । ୩୫ । ଲାଜ-ତମ—ଲାଜ ରୂପକ ଅନ୍ଧାର । ୩୬ । ତାମ୍ରଚୂଡ଼—କୁକୁଡ଼ା । ଫୁରେ—ଡୁରେ । ୩୭ । ଦ୍ୱାର ନିରୂପଣ—ଦ୍ୱାର ଦେଖିବା । ତାହାରେ ବହିଲେ—ଚନ୍ଦ୍ରଲେଖା ଠାରେ ଭାର ଦେଲେ । ୪୦ । ହର ତପ ଘାତ—ହର ତପ ଯେ କନ୍ଦର୍ପ, ତାଙ୍କର ପିତା ଯେ ଶ୍ରୀକୃଷ୍ଣ ।

ଇତି ନବମ ଛାନ୍ଦର ଉଷା-ଉଲ୍ଲାସିନୀ ଟୀକା ସମାପ୍ତ ।

# ଦଶମ ଛାନ୍ଦ

## ଆଷାଢ଼ଶୁକ୍ଳ ବାଣୀ

ଏମନ୍ତେ କହୁଁ ବଦନ ହୋଏ ଶେଷ । ଗଗନ ଢାଙ୍କି ମେହୁ ପରବେଶ ।
ରବି ଶଶୀ ତାରା ନୋହେ ପ୍ରକାଶ । ପଙ୍କିଲ ମହୀ ଦାବ ତାପ ନାଶ ।
ତା କୁମର ଦେଖି । ପ୍ରିୟା ପଙ୍କଜ-ବଦନ ନିରେଖି । ୧ ।

ଜାନୁରେ ବସାଇ କାନ୍ଧରେ ଭୁଜ । ଚିବୁକେ ଦେଇ କର-ସରସିଜ ।
ଦେଖ ଭାବିନି ବିଦ୍ୟୁ ମେଘକୋଳେ । ମତ୍ତ ମୟୂରୀ ଶିଖୀ ସଙ୍ଗେ ମିଳେ ।
ଏ ଡାହୁକ ବାଣୀ । ମଣ୍ଡୂକୀ ଅଧ ମତ୍ତ ଯାହା ଶୁଣି । ୨ ।

ନିଜ ସଦନେ ମିଳନ୍ତି ବିଦେଶୀ । ନଦୀଜଳ ଯେହ୍ନେ ସାଗରେ ମିଶି ।
ତିର ସନ୍ତାପ ତେଜିଲେ ଗୃହକ । ମେଘ ତୋଷ କଲା ସକଳ ଲୋକ ।
ଶୁଣ ଗୋ ସଜନି ! ବରଷ ଏକା ଦିବସ ରଜନୀ । ୩ ।

ଘୋର ଜଳଧାରେ ଦିଶେ ନ ଦିଶେ । ବାଟ ନୋହେ କେହୁ ସ୍ୱଚ୍ଛନ୍ଦବଶେ ।
ଚନ୍ଦ୍ରକୁ ନ ଦେଖି ଚକୋରୀ ଦୁଃଖୀ । ଯାଦବେ ତେସନେ ମୋତେ ନ ଦେଖି
ଦେଖ ଇନ୍ଦ୍ରଚାପ । ଧରିଛି ମୋର ପିତାମହ ରୂପ । ୪ ।

ଦେଖ କୁସୁମିତ କଦମ୍ବ ଶୋଭା । ଚୁମ୍ବନ କାଳେ ତୋର ଗଣ୍ଡ ଆଭା ।
ଜଳ ଲୁଚାଇ ବଢନ୍ତେ ପଙ୍କଜ । କୁଳାଙ୍ଗନାକୁ ଯେହ୍ନେ କୁଳ ଲାଜ ।
ଭିନ୍ନ ଜଳମାନ । ସଧୀରେ ଗନ୍ଧ କେତକୀ ପବନ । ୫ ।

୧-୨ :—ମେଦ୍ଧ ପରକାଶ (ଗ) । ୪-୧ :—ଅନ୍ଧକାରେ, ପଥ (ଗ) ।

---

୧ । ମେହୁ—ମେଘ । ଦାବତାପ—ବନଅଗ୍ନି ତାପ ।
୨ । ଶିଖୀ—ମୟୂର । ମଣ୍ଡୂକୀ—ବେଙ୍ଗୁଣୀ ।
୪ । ଦିଶେ—ଦିଗମାନେ । ପିତାମହ ରୂପ—ବ୍ରହ୍ମାଙ୍କ ରୂପ ।

ମୂର୍ଚ୍ଛାଗତ ଭୂମିଗନ୍ଧ ଆଘ୍ରାଣି । ତୋ ମୁଖ-ବାସ ସମତା ନ ଜାଣି ।
ଲୋଧ କୁଟଜ ମଲ୍ଲିକା ମାଳତୀ । ଲୋଭେ ଅଛନ୍ତି ମଧୁକରେ ମାତି ।
ଏ ମଣ୍ଡୁକ ବାଣୀ । କୋକିଳେ ମଉନ ହୋଇଲେ ଶୁଣି । ୬ ।

ସରୋବର ତଟେ ତମାଳ ବନ । ପାରୁଶେ ଜମ୍ବୁଜଳ ପଡ଼େ ଘନ ।
କୁସୁମ ଲତା ଭୂମିତଳେ ଲୁଟେ । ବନ୍ଧ-ପବନେ ଉପରକୁ ଉଠେ ।
ଏ ରୁଚିର କାନ୍ତି । ନୀଳ ମେଘରେ କି ବଳାକା ପନ୍ତି । ୭ ।

ଏମନ୍ତେ ନାନାବିଧ କୃଷ୍ଣ ଭୂଷି । ବଞ୍ଚିଲେ ବରଷା ଦିବସ ନାଶି ।
ଶରଦ ସମୟେ ନିର୍ମଳ ନଦୀ । ମାନ ଗଲେ ଯେସନେ ମାନିନୀ ହୃଦ ।
ରବି ଶଶୀ ଦିଶେ । ବିପଦ ଅନ୍ତେ ସାଧୁଜନ କି ସେ । ୮ ।

ଚନ୍ଦ୍ରଶୋଭା ଦେଖି କୁମୁଦ ବନେ । ଜଗତୀ ଉଭୁର କାମ-ନନ୍ଦନେ ।
ଚନ୍ଦନ ଭୂଷିତ ଅଙ୍ଗେ ସୁକେଶୀ । କି ଏ ମତ୍ତଗଜ ଛଇଳ-ହଂସୀ ।
ତେଜି ମାନସର । ମିଳିଲେ ବିଳାସ-ସରସୀ-ତୀର । ୯ ।

ଚତୁରୀ କହୁ ଚନ୍ଦ୍ରମୁଖୀ କହିଁ । କୃଷ୍ଣ ପ୍ରକାରେ ଭ୍ରମର ବୁଝାଇ ।
ଦେଖ ସଖି ! ନୀଳ ଉତ୍ପଳ ମାଳ । କୁସୁମ ତେଜି ତୋର ପାଶେ ମିଳ ।
ତା ଦେଖି ପଙ୍କଜ । ମୁଦ୍ରିତ ହୋଇଲା ମନରେ ଲାଜ । ୧୦ ।

୬-୭ :—ମେଘ ବର୍ଣ୍ଣିରେ (ଖ, ଗ) । ୯-୭ :—ଧରଣି ତୀର (ଖ) ।

---

୬ । କୁଟଜ—ବଣମଲ୍ଲୀ । ୭ । ଜମ୍ବୁଜଳ—ଜାମୁକୋଳି ଗଛ ପାଣି । ବନ୍ଧ-ପବନେ—ବିପରୀତ ପବନରେ (ଓଲଟା ବାୟୁରେ) । ବଳାକାପନ୍ତି—ବକସବୁ ।

୮ । ହୃଦ—ହୃଦକୁ । ୯ । ଜଗତୀ—କୋଠାକୁ । ବିଳାସ-ସରସୀତୀର—କ୍ରୀଡ଼ା ପୋଖରୀର କୂଳ । ୧୦ । ଉତ୍ପଳ—ଭଅଁର ।

ମନୋରମ ଯହିଁ ନଦୀ ପୁଳିନ । ମୋ ମନ ହରଇ ତୋର ଜଘନ ।
ମରାଳ ଦେଖି ତୋ ନୂପୁର ନାଦ । ଗତି ଛାଡ଼ିଲା ମଉନ ବିଷାଦ ।
ଗୋ ଚକୋର ଦେଖ । ଚନ୍ଦ୍ରେ ରସିଲେ ତୋ ନ ପାଇ ମୁଖ ।୧୧।

କୁମୁଦ ପାଶେ କୋକନଦ ଜ୍ୟୋତି । ଶେଫାଳିକା ଶୋଭା ପୋଏଲା ମୋତି
ରଙ୍ଗ ଶୁକ୍ଳ ବିହି କଲା ଯୋଗ । ସ୍ୱଚ୍ଛ ହୃଦୟେ ସ୍ନେହ ଅନୁରାଗ ।
ପଲ୍ଲବିତ ଲତା । ବହୁଛନ୍ତି ତୋର ଚରଣ ରତା । ୧୨ ।

କୁନ୍ଦ ସେବତୀ ମଲ୍ଲୀ କୋବିଦାର । ଇନ୍ଦୁ କିରଣ କି ଭୂମି ଗୋଚର ।
ତୋ ମୁଖ ଶୋଭାକୁ ନ ପାରେ ଜିଣି । କିରଣ ଛାଡ଼ିଲା ଏ ନିଶାମଣି ।
ସେ ଅତି ପିଶୁନ । କଳା ଶେଷ ହୋଏ ଉଆଁସ ଦିନ । ୧୩ ।

ଦିବସେ ପାଣ୍ଡୁର ବିକାଶେ ନିଶି । ଚନ୍ଦ୍ରକୁ ନ ଦେଖି ଉଲୂକ ତୋଷି ।
ଦେଖି କମ୍ପେ ତନୁ ଶୁଖେ ଅଧର । ଲୋଡ଼ୁଛି ମିଳିବେ ବଡ଼ଭୀ-ପୁର ।
ବିବିଧ ବିଳାସେ । ରଜନୀ ବଞ୍ଚିଲେ ଅତି ଉଲ୍ଲାସେ । ୧୪ ।

ଏକ ଦିବସେ ପ୍ରାଣପ୍ରିୟା ସଙ୍ଗେ । ପଶାରେ ରସିଲେ ବିବିଧ ରଙ୍ଗେ ।
ଅନ୍ୟ ଅନ୍ୟଭାବେ ଜିଣିତ ମନ । ହୋଉ ହୋଇଛି ଚୁମ୍ବ ଆଲିଙ୍ଗନ ।
ଶୁଣିମା ସୁମତି । ଡଗର ଜଣାଇ ଶୁଣ ନୃପତି । ୧୫ ।

---

୧୧ । ନଦୀ-ପୁଳିନ—ନଦୀ କୂଳରେ ଥିବା ବାଲିଆ ସ୍ଥାନ । ମରାଳ—ହଂସ । କୋକନଦ-ଜ୍ୟୋତି—ରକ୍ତପଦ୍ମର କାନ୍ତି ।

୧୨ । ସ୍ୱଚ୍ଛ···ଅନୁରାଗ—ଶୁଭ୍ର ବା ନିର୍ମଳ ହୃଦୟରେ ସ୍ନେହର ରକ୍ତିମା ।

୧୩ । କୋବିଦାର—ଧଳା କଞ୍ଚନ ଫୁଲ । ପିଶୁନ—ହୀନ, ପାପିଷ୍ଠ ।

୧୪ । ପାଣ୍ଡୁର—ଶେତା, ଫିକା । ଉଲୂକ—ପେଚା । ବଡ଼ଭୀ—ଚନ୍ଦ୍ରଶାଳା ।

୧୫ । ଅନ୍ୟ ଅନ୍ୟଭାବେ—ପରସ୍ପରରେ ।

ରଥରୁ ପଡ଼ିଲା ମୟୂରଧ୍ୱଜ । ଶୁଣି ସନ୍ତୋଷେ ସେ ଅସୁରରାଜ ।
ହେନ ସମୟେ ଉତ୍ତର ପାଦାସୀ । କହିଲା କନ୍ୟା ପୁରେ ରହିଅଛି ।
ତା ଶୁଣି ପ୍ରକୋପେ । ଅସୁର ଧାଇଁଲା ପ୍ରଚଣ୍ଡ ରୂପେ । ୧୬ ।

ଦେଖିଲା ମେଢ଼ ଦ୍ୱାରେ ଦିବ୍ୟରୂପ । ନୀଳମଣି ଶ୍ୟାମ ଅନଙ୍ଗ ଭୂପ ।
ପୀତ ପଟନୀ ଗଳେ ବନମାଳ । କେକିପୁଚ୍ଛ ଶୋଭା ସେବନ୍ତୀ ଫୁଲ ।
ସ୍ୱୟଂ କୃଷ୍ଣ ଶୋଭା । ଅମଳ କମଳ ଲୋଚନ ପ୍ରଭା । ୧୭ ।

କରକମଳ ମୃଣାଳ ସହିତେ । କରେ ପଶା କାଠି ଦେଖିଲେ ସୁତେ ।
କୋପେ ଗର୍ଜଇ ମତ୍ତନାଗ ଜାଣି । ଜୀବନ ଉଡ଼ିଲା ବରତରୁଣୀ ।
ତା ଆଶ୍ୱାସ କରି । ଲୋହ ପରିଘ, ବୀର କରେ ଧରି । ୧୮ ।

ସୂର୍ଯ୍ୟମଣି ଯେସନେ ରବିକି ଦେଖି । ତେସନେ ବୀର ଦନୁଜ ନିରେଖି ।
ବିକ୍ରମେ ବିକ୍ରମ-କେଶରୀ ମତ । ବନ୍ଧୁତ ସୈନ୍ୟ ସେ କଲା ନିପାତ ।
ତା ପରିଘ ଘାତେ । ମୋହ ହୋଇଲା ବାଣାସୁର ରଥେ । ୧୯ ।

୧୬-୨ :—ଉତ୍ତର (ଖ) । ୧୭-୪ :—ଶିଖିପୁଚ୍ଛ ଶିରେ (ଖ) । କେକିପୁଚ୍ଛ ଶୋଭି (ଚ) ।
୧୭-୬ :—ଅମଳ ଲୋଚନ ପ୍ରଭା (ଖ) । ୧୮-୧ :—କର-କମଳ (ଖ), କୂରଗ
କରେ (କ) ।

---

୧୬ । ମୟୂରଧ୍ୱଜ—ବାଣାସୁରଠାରେ ସନ୍ତୁଷ୍ଟ ହୋଇ କାର୍ତ୍ତିକେୟ ଦେଇଥିବା ମୟୂର ପୁଚ୍ଛର ପତାକା । ହେନ ସମୟେ—ଏପରି ସମୟରେ ।

୧୭ । ପୀତପଟନୀ—ହଳଦିଆ ଲୁଗା । ମେଢଦ୍ୱାରେ—ଉଷା ମେଢର ଦୁଆରରେ ।

୧୮ । କମଳ ମୃଣାଳ—ପଦ୍ମନାଡ଼ । ମତ୍ତନାଗ—ମତ୍ତହସ୍ତୀ । ତା—ଅସ୍ଥିର ହେଉଥିବା ଉଷାକୁ । ଲୋହ ପରିଘ—ଲୁହାରେ ତିଆରି ହୋଇଥିବ ଅସ୍ତ୍ର ବିଶେଷ ।

୧୯ । ସୂର୍ଯ୍ୟ (କାନ୍ତ) ମଣି—ଏକପ୍ରକାର ମଣି, ସୂର୍ଯ୍ୟ କିରଣ ସହଯୋଗେ ଏଥିରୁ ନିଆଁ ବାହାରେ । ବୀର—ଅନିରୁଦ୍ଧ । ବିକ୍ରମ-କେଶରୀ-ମତ—ବଳୁଆ ସିଂହ ପରି ।

ରାଜା କର୍ଣ୍ଣରେ କହଇ ସଚିବ । ଶ୍ରୀକୃଷ୍ଣ-ସୁତ-ସୁତ ଏହୁ ଦେବ ।
ଭୂ ଚାର ସିନା ସେହୁ ଚାରବର । ପାରିଲେ ଏଥି ମାୟାଯୁଦ୍ଧ କର ।
ଏ ସାମାନ୍ୟ ନୋହେ । ବାଣାସୁର କର୍ଣ୍ଣେ ସଚିବ କହେ । ୨୦ ।

ତେଣୁ ଉଠି ପୁଣି ମନ୍ତ୍ରୀ ବଚନେ । ଅକାଶେ ପଶିଲା ମାୟା ବିମାନେ ।
ନାଗ ପାଶ ବାଣେ ବାନ୍ଧଣ ତାହା । ନଗରେ ପଶିଲା ମନ ଉତ୍ସାହା ।
ତା ଦେଖି ଭାମିନୀ । ଭୂରଢେ ମୋହେ ପଡ଼ିଲା ଧରଣୀ । ୨୧ ।

ଜଳ ସିଞ୍ଚ କଲା ସଚେତ ସଖୀ । ଗଦଗଦ ବାଣୀ ଚନ୍ଦ୍ରମାମୁଖୀ ।
ରୋଦନ କରେ କାନ୍ତ ଗୁଣ ଗୁଣି । ଶିଶୁ ଶଙ୍କର ଏ ରସ ବଖାଣି ।
ଉଷା ଅଭିଳାଷ । ଦଶମ ଛାନ୍ଦ ଶୁଭେ ହୋଯେ ଶେଷ । ୨୨ ।



୨୦-୪ :—ପାରିଲେ ତାରେ ଦେବ ଶସ୍ତ୍ର କର (ଖ) । ୨୦-୭ :—ତା ମନ୍ତ୍ରୀ (ଗ) ।

୨୦ । ସଚିବ—ମନ୍ତ୍ରୀ । ୨୧ । ତାହା—ତାହାକୁ ଅର୍ଥାତ୍ ଅନିରୁଦ୍ଧଙ୍କୁ ।

ଇତି ଦଶମ ଛାନ୍ଦର ଉଷା-ଉଲ୍ଲାସିନୀ ଟୀକା ସମାପ୍ତ ।

# ଏକାଦଶ ଛାନ୍ଦ

ରାଗ—ଦକ୍ଷିଣ ଦେଶାକ୍ଷ

ପଙ୍କିଲ ବଦନ ଲୁଲେ କଜ୍ଜଳ ଜଳେ
କର-କୋକନଦ ଦେଇ କପୋଳ ତଳେ । ୧ ।

ଖେଦନ କରଇ ଶ୍ୟାମା ହେଠ ବଦନ
ଆହା! ବିଧି ଦାରୁଣ ତୁ କରୁଣାହୀନ । ୨ ।

ଆହା! ପ୍ରାଣନାଥ ଛାଡ଼ି ଗଲୁ ତୁ କାହିଁ
ଲୋଚନ ଢାଙ୍କିବା ତୁ ଯେ ନ ପାରୁ ସହି । ୩ ।

ଚନ୍ଦ୍ରକୁ ବାଧଇ ତୋର ହଂସୁଳୀ ତୁଳୀ
ଅବଜ୍ଞା ସୁଅଙ୍ଗ କଲୁ ଶୋଇଲୁ ଧୂଳି । ୪ ।

ଆଲିଙ୍ଗନ ଚୂଡ଼ ସଞ୍ଚା ଦେହରେ ବସେ
କେମନ୍ତେ ସହିଲୁ ଏବେ ଉରଗ ପାଶେ । ୫ ।

ନିତ୍ୟକର୍ମ ବିଧି ହୋଇସ୍ତୁ ଯେତେକ ବେଳେ
ମଦନେ ଅତୁର ହୋଉଥାଉ ବିକଳେ । ୬ ।

ଚିତ୍ରପଟ ଲିହ୍ନୁ ତୁ ଯେ ଅରନ୍ଧ୍ର କାଳେ
ଏବେ ତୁ ସେ ସ୍ନେହ ନାଥ! ଛାଡ଼ିଲୁ ଢାଳେ । ୭ ।

---

୧ । ପଙ୍କିଲ ବଦନ—ସୁନ୍ଦର ମୁଖ (ପିଙ୍ଗଳ ଶବ୍ଦରୁ ପଙ୍କିଳ) । କର-କୋକନଦ—ରକ୍ତ ପଦ୍ମତୁଲ୍ୟ ହାତ ।

୪ । ହଂସୁଳୀ ତୁଳୀ—ହଂସ ପରରେ ତିଆରି ହୋଇଥିବା ଶେଯ । ୫ । ଉରଗ ପାଶେ—ନାଗ ପାଶରୁ ।

୭ । ଅରନ୍ଧ୍ର କାଳେ—ଅଛିଦ୍ର ସମୟରେ (ଦୁଃଖ ସମୟରେ) । ଏହା ବୈଦଗ୍ଧ୍ୟ ଭାଷା ।

ନିଶାକାଳେ ଚକ୍ରବାକୀ ଦେଖିଲେ ଭ୍ରାନ୍ତ
ମୁହିଁ ଦୁଃଖୀ ମୋତେ କ କେ ନୋହିଁ ଦୟାନ୍ତ । ୮ ।

ଜାଣୁ ନା ସପନେ କେନେ ହସଇ ମୋତେ
ରୋଦନ କରି ଉଠିଲୁ ନିଦ୍ରାର ଅନ୍ତେ । ୯ ।

ନ କହି ମନେ ହସିଲୁ, ମୁଁ କଲି ମାନ
ଦ୍ୱାରକା ଯୁବତୀ କ ତୋ ପଡ଼ିଲେ ମନ । ୧୦ ।

ଚରଣ ଧରଣ ମୋତେ ବୋଇଲୁ ଯାହା
କେମନ୍ତେ ଛଡ଼ିଲୁ ନାଥ ! ତେଡ଼େ ସେନେହା । ୧୧ ।

ଜାଣେ ନା ତୋଠାରେ କେନେ ବିନୋଦ ରତ
ଲତାରେ ଲୁଚଇ ତୋର ଜାଣିମା ସତ । ୧୨ ।

କାତର ସ୍ୱଭାବେ ନାଥ ! ବାଭୁଲ ହୋଇ
ତରୁ ଲତା ଏକୁ ଏକ ପୁଚ୍ଛିଲୁ ଯାଇଁ । ୧୩ ।

କୋକିଳ ବଚନ ଶୁଣି ଡାକିଲୁ ମୋତେ
ପଲ୍ଲବିତ ଲତା କୋଳ କଲୁ ଭୁଜେ । ୧୪ ।

ହରଣ ହରଣୀ ଦେଖି ରୋଦନ କଲୁ
ମୁଁ ଯାଇଁ ପାଦେ ପଡ଼ନ୍ତେ ତୋଳ ଧଇଲୁ । ୧୫ ।

ଶୋକମୁଖ ହୋଇ ଯାହା ବୋଇଲୁ ସାଙ୍ଗେ
କେମନ୍ତେ ତା ପାସୋରିଲୁ ବିହି ବିଯୋଗେ । ୧୬ ।

ନିଦ୍ରାହିଁ ବିରଙ୍ଗ ମଣୁ ମୋହୋର ପାଶେ
ଶୟନେ ଲେଉଟୁ ନାହିଁ ବିଚ୍ଛେଦ ଅଶେ । ୧୭ ।

---

୧୨ । ବିନୋଦ—ଖେଳ । ୧୭ । ବିରଙ୍ଗ—ନିର୍ବେଗ ବା ବିରକ୍ତି ।

ହୃଦରେ ଲାଗିଲା ତୋର ଅଳତା ରଙ୍ଗ
ଆଙ୍କି ଦେଲୁ ତୋର ସ୍ନେହେ ଶୋଭି ମୋ ଅଙ୍ଗ । ୧୮ ।

ପ୍ରବେଶ ସମୟେ ତୋର ହୃଦୟ ଦେଶେ
ଚନ୍ଦନ ନ ଲେପୁ ତନୁ ଅନ୍ତର ଆଶେ । ୧୯ ।

ସେନେହ ମଦିରା ସ୍ୱାଦ ଚଖାଇ ମୋତେ
ହରିଲୁ ଧଇର୍ଯ୍ୟ ମନ ଚଉର୍ଯ୍ୟ ମତେ । ୨୦ ।

ଯେବେ ଛାଡ଼ି ଯିବୁ କି କେ ସେନେହ କଲୁ
ଏକରସ କରି ମୋହ-ଜଳେ ଭରିଲୁ । ୨୧ ।

କେଣେ ଯେ ସରଳ ବୋଲୁ ହୃଦୟ ମୋର
ତୋର ବିନୁ ରହିଅଛି ବକ୍ର ଆକାର । ୨୨ ।

ବିପରୀତ ରତିକାଳେ କୁଚର ଝାଳ
ହୃଦରେ ତୋ ଜାତ କରେ ପୁଲକକୁଳ । ୨୩ ।

ବୋଇଲୁ ଯେ କୁମ୍ଭଜଳ ସିଞ୍ଚିଲୁ ପ୍ରିୟେ
ମଦନ-ଅନଳ ଆଉଁ ହୋଇଲା ଛୟେ । ୨୪ ।

ଯୁବତୀ ସଭାରେ କାମ ଭିଡ଼ ସରିଲା
ବିଧାତା ଅଜନ୍ତୁଁ ରସକଳା ହରିଲା । ୨୫ ।

୨୧-୧ :—ମୂହାଁସ (ଗ) । ୨୧-୨ :—ଏକରସ କଇ ଖ; ମେଲିଲୁ (ଖ) ।
୨୪-୨ :—ହୃଦୟ କାମ-ଅନଳ ହୋଇ ମୋ ଛୟେ ।

---

୨୦ । ଚଉର୍ଯ୍ୟ ମତେ—ଚୋର ରୂପରେ ।

୨୧ । ଏକରସ—ଏକନିଷ୍ଠ । ୨୧ । କାହା—କାହାର ।

ମଦନ-ନନ୍ଦନ ତୁମ୍ଭେ ଶ୍ରୀକୃଷ୍ଣ ନାତି
ତୁମ୍ଭଙ୍କୁ ଅପୂର୍ବ ଅବା କାହିଁ ଯୁବତୀ । ୨୬ ।

ବିଲକ୍ଷଣୀ ସଙ୍ଗ ପାଇ ହୋଇଲୁ ନାଶ
ମଧୁପ ଯେସନେ ଗନ୍ଧ କେତକୀ ପାଶ । ୨୭ ।

ଉତପାତ ଚିହ୍ନ ଦେଖି ଦ୍ୱାରକା ଲୋକେ
କେମନ୍ତେ ବଞ୍ଚିବେ ବିନ ତୋହୋର ଶୋକେ । ୨୮ ।

କେମନ୍ତେ ଜନନୀ ତୋର ଧରିବ ହିୟା
ଆହା ପ୍ରାଣନାଥ ! ମୋତେ କଲୁ ତୁ କାହା । ୨୯ ।

ଏତେ ବୋଲି ମୋହ ଗଲା ଧରଣୀ-ତଳେ
ଜଳ ସିଞ୍ଚି ସଖୀ ତାର ଧଇଲା କୋଳେ । ୩୦ ।

ସଚେତ କରାଇ ତାକୁ ଆଶ୍ୱାସି କହି
ପ୍ରଭୁଙ୍କୁ ବିପତ୍ତି ତୋର ନାହିଁ ଗୋ ସହି । ୩୧ ।

ତୋହୋର ଅଧର-ସୁଧା କରନ୍ତି ପାନ
ତାହାଙ୍କୁ ବିପତ୍ତି ସଖି ! ମନେ ନ ଘେନ । ୩୨ ।

ମୋହ ଯାଇଛନ୍ତି ନାଥ ଜଇବେ ପୁଣି
ଏଥକୁ ଆସିବେ ଆଜ ଶାରଙ୍ଗ-ପାଣି । ୩୩ ।

ସଚେତ ହୋଇଲା ଶୁଣି ନୃପ-ଦୁଲାଳୀ
କେ ଯାଇ କହିବ ଆଜ ଶ୍ରୀବନମାଳୀ । ୩୪ ।

ପାପିଷ୍ଠ ପିଅର ମୋର କରନ୍ତୁ ନାଶ
ପ୍ରାଣନାଥ ଦାନ ଦିଅନ୍ତୁ ଅଖିଳବାସ । ୩୫ ।

---

୩୫ । ଅଖିଳ ବାସ—ଶ୍ରୀକୃଷ୍ଣ ।

ଝୁରଇ କୁରରୀ ମତ ଜ୍ଞାନ ହରାଇ
ବାସୁଦେବ ସୁମରଇ ଚେତନା ପାଇ । ୩୬ ।

ଷଣେ ମୋହ ଷଣେ ଷଣେ ରୋଦନ କରେ
ତନୁ-ଶୋକ-ଲତା ବଢ଼େ ନୟନ ନୀରେ । ୩୭ ।

ଏଥୁ ଅନନ୍ତରେ ତହିଁ ନାରଦ ଋଷି
ଦ୍ୱାରକାରେ ପରବେଶ କୃଷ୍ଣରେ ଭୂଷି । ୩୮ ।

ବାଣାସୁର ଝିଅ ଚୋର ହରଲ୍ଷ ନାଥ
ଜାଣିଣ ବନ୍ଧନ ତାଙ୍କୁ କଲା ନୃପତ । ୩୯ ।

ଭୁବଚେ ଛଡ଼ାଇ ବେଗେ ଅସୁର ମାର
ଶୁଣି କୋପେ ସଜ କଲେ ବଳ ଅପାର । ୪୦ ।

ରାଜା ଉଗ୍ରସେନ ଆଦ ଯାଦବ ବୀରେ
ଉଭଚେ ମିଳଲେ ଯାଇ ଶୋଣିତପୁରେ । ୪୧ ।

କମ୍ବୁ ଚକ୍ରଧର କୃଷ୍ଣ ଦାସର ଦାସ
ଉଷା-ଅଭିଳାଷ କହେ ଶଙ୍କର ଦାସ । ୪୨ ।



୪୧-୧ :—ରାମକୃଷ୍ଣ ଉଗ୍ରସେନ (ଖ, ଗ) ।

---

୩୬ । କୁରରୀ—କ୍ରନ୍ଦନଶୀଳ ପକ୍ଷୀ ବିଶେଷ ।

ଇତି ଏକାଦଶ ସ୍କନ୍ଧର ଭାଷା-ଉଦ୍ଧାସିନୀ ଟୀକା ସମାପ୍ତ ।

# ଦ୍ୱାଦଶ ଛାନ୍ଦ

ବାଣ—ଚକ୍ରା ଭୈରବ

ଗରୁଡ଼ ପିଠିରେ ବଜେ ଦେବେ ନାରାୟଣ
ଶଙ୍ଖ ଚକ୍ର ଗଦା ପଦ୍ମ ଶାରଙ୍ଗ କରେଣ ।
ରଥ ଗଜ ଅଶ୍ୱ ନର ଚତୁରଙ୍ଗ ବଳ
ଅନ୍ତ ସମୟରେ ବଜାୟେ ଅଖିଳ ମଙ୍ଗଳ ।
ଶୁଭ ପାରୁଶରେ ବେଢ଼ିଛନ୍ତି ଯଦୁବୀରେ
ନ ଗଛେ ଉପମା ଦେବା ଯେହ୍ନ ମନେ ଷ୍ଫୁରେ । ୧ ।

ଡମ୍ବରୁ ନିଶାଣ ଭେରୀ ମୃଦଙ୍ଗ କାହାଳ
ବେଣୁ ବୀଣା ଶଙ୍ଖ ମିଶି ଶୁଭଇ ଚହଳ ।
ଜଳଧି ମନ୍ଥନେ ଯେସନେ ଶୁଭେ ସିନ୍ଧୁଘୋଷ
ପାଞ୍ଚଜନ୍ୟ ଶଙ୍ଖ ଶବ୍ଦେ ଷ୍ଫୁରେ ଦଶଦେଶ ।
ମଙ୍ଗଳ ପଢ଼ନ୍ତି ତହିଁ ବ୍ରାହ୍ମଣ ଅପାର
ନଟ ଭାଟମାନେ ତ କରନ୍ତି କୟେବାର । ୨ ।

୧-୨ :—ଗଦାଧର ମକର (ଶ) । ୨-୩ :—ଜଳଧିମନ୍ଥନେ ଯେସନେ କ୍ଷୀରସିନ୍ଧୁ ଘୋଷ (ଖ) ।

---

୧ । ଶାରଙ୍ଗ—କୃଷ୍ଣଙ୍କ ଧନୁ । ଚତୁରଙ୍ଗ ବଳ—ରଥାରୋହୀ ଗଜାରୋହୀ ଅଶ୍ୱାରୋହୀ ପଦାତି—ଏହି ୪ ପ୍ରକାର ସୈନ୍ୟଙ୍କୁ ଚତୁରଙ୍ଗ ବଳ କୁହାଯାଏ । ଅନ୍ତ ସମୟରେ—ସମାବେଶରେ । ନ ଗଛେ···ଷ୍ଫୁରେ-ତୁଳନା ଦେବା ସଙ୍ଗତ ନୁହେଁ, ମନରେ ଏହି ଭାବନା ଆସେ ।

୨ । ସିନ୍ଧୁଘୋଷ—ସମୁଦ୍ରର ମନ୍ଥନ ଶବ୍ଦ ବା ଗର୍ଜନ । ପାଞ୍ଚଜନ୍ୟ—କୃଷ୍ଣଙ୍କ ଶଙ୍ଖ । କୟେବାର—ମଙ୍ଗଳ ପାଠ, ସ୍ତୁତି ।

ଶ୍ୱେତ ଛତ୍ର ଉଡ଼ାଉଣ୍ଣ ଦିନକର ଜ୍ୟୋତି
କ୍ଷୀର ଜଳନିଧି କି ଲଙ୍ଘିଲା ବସୁମତୀ ।
ଚକୋର ହରଷ ହୋଏ ବିକାଶେ କୁମୁଦ
ପାଦରେଣୁ ଶାନ୍ତ ହେଲା ପଡ଼ି ଗଜ ମଦ ।
ବନ ଗିରି ନଦୀ ସବୁ ହୋଇଲାକ ସମ
ଶୋଣିତ-ପଦ୍ମବନେ ଉଦଏ କିବା ସୋମ । ୩ ।

ଚତୁରଙ୍ଗ ବଳ ଘେନି ଯୁଝଇ ଅସୁର
ଶିବଗଣ ଘେନିଣ ଶଙ୍କର ଆଗଭର ।
ରାମକୃଷ୍ଣ ସାହା ପାଇ ଯଦୁବୀରମାନେ
ରଣେ ବାଣ ବଳ ପେଷି କୃତାନ୍ତ ସଦନେ ।
ହରି ହର ବେନି କଲେ ସମର ଯେ ଘୋର
ଛନପୁର ଭୟେ କମ୍ପେ, ଦେଖନ୍ତି ଅମର । ୪ ।

ପିତାମହ ଶାନ୍ତ କରି ରୁହାଇଲେ ଶିବ
ଜଗନ୍ନାଥ ସଙ୍ଗେ ବାଣ ଯୁଦ୍ଧ ଅସମ୍ଭବ ।
ଚକ୍ର ଘେନି ହାଣନ୍ତେ ତା ରଖିଲେ ଭବାନୀ
ଶେଷେ ବାହୁବଳ ଛେଦି ରୁହାଇଲେ ବେନି ।
ଦୁର୍ଜୟ କଣ୍ଟକ ତାର ଜାଣି ଯଦୁପତି
ବାଣାକୁ ଜୀବନ ଦେଲେ ଶଙ୍କର ପୀରତି । ୫ ।

---

୩ । ଏଠାରେ ଚକୋର ହରଷ ଓ କୁମୁଦ ବିକାଶ ବର୍ଣ୍ଣନା ହେତୁ ଶ୍ୱେତଛତ୍ର ଚନ୍ଦ୍ର, ଏହା ବ୍ୟଞ୍ଜନା ଦ୍ୱାରା ବୁଝିବାକୁ ହେବ । ଗଜମଦ—ହାତୀର ମୁଣ୍ଡରୁ ଝରୁଥିବା ମଦଜଳ । ଶୋଣିତ-ପଦ୍ମବନ—ଶୋଣିତପୁରକୁ ଏଠାରେ ପଦ୍ମବନ ବୋଲି ବର୍ଣ୍ଣନା କରାଯାଇଅଛି । ସୋମ—ଚନ୍ଦ୍ର ।

୪ । କୃତାନ୍ତ ସଦନେ—ଯମପୁରକୁ । ଅମର—ଦେବତା ।

ଅନ୍ତଃପୁରେ ବିଜେ କଲେ ଅନିରୁଦ୍ଧ ପାଶେ
ନାଗପାଶ ପଳାଇଲେ ଗରୁଡ଼ର ତ୍ରାସେ ।
ବରକନ୍ୟା ଆଣି କୃଷ୍ଣ ବସାଇଲେ କୋଳେ
ଶଙ୍ଖ ବଜାଇ ବାହୁଡ଼େ ପରମ ମଙ୍ଗଳେ ।
ବାଦ୍ୟ ଘନ ଘନ ରବେ ଗଗନ ପୂରିଲା
ବୈରୀ ନରପତି ପୁରେ ଚମକ ପଡ଼ିଲା । ୬ ।

କନକ ଗିରିରେ ଯେସନେ ନୀଳ ନବଘନ
ଇନ୍ଦ୍ରଧନୁ କୋଳେ କି ତଡ଼ିତ ଶୋଭିବନ ।
ତେସନ ବିନତା-ସୁତ ଉପରେ ମୁରାରି
କୋଳେ ଅନିରୁଦ୍ଧ ଊଷା ଉପମି ନ ପାରି !
ସଧୀରେ ସଧୀରେ ଚଳେ ଭୂମିଗତ ବଳ
ଉପରେ ଗଗନଗଣ୍ଡ ବିଜେ ଅଦମ୍ଭଳ । ୭ ।

ଶ୍ୱେତ ଛତ୍ର ରତ୍ନମୟ ଗଜ ବାଜୀ ଅଛି
ତେଣୁ ସେ ସଇନ ଶୋଭି ସିନ୍ଧୁ ପ୍ରାୟେ ଗଛି ।
ଗରୁଡ଼ ମୁକୁନ୍ଦ ତହିଁ ମନ୍ଦର ପରାୟେ
ଲାବଣ୍ୟ-ଲକ୍ଷ୍ମୀ ଲଭିଲେ ସିନ୍ଧୁ ମନ୍ଥିବାୟେ ।
ପୂରୁବେ ଅମରେ ଲଭିଥିଲେ ଯେତେ ଯେତେ
ଏକରୂପ ଧରି ବାହାର ହୋଇଲେ ତେତେ । ୮ ।

୭-୧ :—କନକ ଗିରି ଶିରରେ ଉଦେ ନବଘନ (ଖ)

---

୬ । ତ୍ରାସେ—ଭୟରେ । ବୈରୀ ନରପତି—ବାଣାସୁର ।
୭ । ବିନତା-ସୁତ—ଗରୁଡ଼ । ଗଗନ ଗଣ୍ଡ—ଗରୁଡ଼ । ଅଦମ୍ଭଳ—କୃଷ୍ଣ ।
୮ । ଗଜବାଜୀ—ହାତୀ ଘୋଡ଼ା । ସିନ୍ଧୁ ପ୍ରାୟେ ଗଛି—ସମୁଦ୍ରପରି ଦେଖା ଯାଉଅଛି । ସିନ୍ଧୁ ମନ୍ଥିବାୟେ—ସିନ୍ଧୁ ମନ୍ଥିବା ହାରି ।

ତନୁ ଲକ୍ଷ୍ମୀ, ଦନ୍ତ ମଣି, ଲପନ ଚନ୍ଦ୍ରମା
ଅଧର ପୀୟୂଷ, ଗଣ୍ଡ ଗଜଗଜ ବାମା ।
ବନ୍ଧୁଜୀବ ହନୁବର, ଶୋଭା ଦରହାସ
ଭୂଷଣ ପାଟଜାତକ, ଦୃଗଞ୍ଚଲ ବସ୍ତ୍ର ।
ସବୁ ଦେବତାଏ କି ସେ ଏକରୂପ ଧରି
ଅନିରୁଦ୍ଧ ରୂପ ଲଭି ବାଦ ପରସ୍ପର । ୯ ।

ଗମନ୍ତେ ଚରଣ ରେଣୁ ଦିଗ ଆଚ୍ଛାଦିଲା
ଦିନକର ଉହାଡ଼ି କି ଅନ୍ଧାର ଫୋଟିଲା ।
ନିର୍ମଳ ଚନ୍ଦ୍ରମା ଉଷା ବଦନ ଉଜ୍ଜ୍ୱଳେ
ଯାନଶ୍ରେଣି ପଥ ବହି ଦ୍ୱାରବତୀ ମିଳେ ।
ଆସନ୍ତି ଯୁବତୀ ଏକ ଆରେକଙ୍କୁ ଚାଇ
ଗୁରୁ ଗୌରବ ତେଜନ୍ତି ଉଚ୍ଚଭ୍ରୂ ବଢ଼ାଇ । ୧୦ ।

ହାର ଗୁନ୍ଥୁଥିଲା କେହୁ ହରାଇଲା ବାଟେ
ବସନ ଅଧେ ପିନ୍ଧିଲା ଯାଉଁବା ଉଚ୍ଚାଟେ ।
ବୀଣା ବାଉଥିଲା କେହୁ ରାମା ଛାଡ଼ି ଗଲା
ବିଭ୍ରମେ କୁଚ ଆଉଁଶେ ତୁମ୍ବୀ ମଣି ବାଲା ।
କୁଳବଧୂମାନେ ଜାଲା-ଗବାକ୍ଷରେ ଚାହିଁ
ବହୁ ପ୍ରଶଂସା କରନ୍ତି ଏକ ଯୋଗ ହୋଇ । ୧୧ ।

---

୯ । ତନୁ—ଉଷାର ଦେହ । ଗଜଗଜ—ଶୀର୍ଷବନ୍ଧ । ବନ୍ଧୁଜୀବ—ଚଞ୍ଚଳ ନାକ ଗୁହାଣି । ହନୁବର—ଓଠଚିବୁକ । ଦର—ଶଙ୍ଖ । ପୂର୍ବେ ସମୁଦ୍ର ମନ୍ଥନ ବେଳେ ଦେବତାମାନେ ଯାହା ଯାହା ପାଇଥିଲେ, ସେ ସବୁ ଗୋଟିଏ ରୂପ ଧରି ଉଷାଠାରେ ଦେଖାଦେଲେ । ସମସ୍ତ ଦେବତା ବିବାଦ ଛାଡ଼ି ଅନିରୁଦ୍ଧ ରୂପରେ ଉଷା ରୂପ ସମସ୍ତ କାମ୍ୟ ଦ୍ରବ୍ୟ ଗ୍ରହଣ କଲେ ।

୧୧ । ତୁମ୍ବୀ ମଣି—ବୀଣାର ତୁମ୍ବୀ ବୋଲି ମନେକରି । ଜାଲା ଗବାକ୍ଷ—ଝରକା ।

ରାଜମାର୍ଗେ ବାଟ-ବିଳାସିନୀ ଉଭା ହୋଇ
ବାହୁ-ତୋରଣରେ କର-ପଲ୍ଲବ ଲମ୍ବାଇ ।
ଉଚ୍ଚକୁଚ କରିଛନ୍ତି ମଙ୍ଗଳ କଳଶ
କୁସୁମ ବୃଷ୍ଟି ପ୍ରାୟେକ ମନ୍ଦ ମନ୍ଦ ହାସ ।
କନକ କଦଳୀ ନିନ୍ଦେ ଜାନୁଯୁଗ ଶୋଭା
ଲୋଚନ-ଶଫରୀ ସର୍ବ-ମଙ୍ଗଳର ଶୋଭା । ୧୨ ।

ଚନ୍ଦନ ଦୂର୍ବା ଅକ୍ଷତ ଦଧି ଅର୍ଘ୍ୟ ଘେନି
ବ୍ରାହ୍ମଣ ପଢନ୍ତେ ଶୁଭେ ହୁଳହୁଳି ଧ୍ୱନି ।
ନବରେ ବିଜୟେ କଲେ ଅଖିଳମଙ୍ଗଳ
ପୁରବଧୂ ବନ୍ଦାପନ୍ତି ହରପ୍ରିୟା-କୁଳ ।
ରୁକ୍ମିଣୀ ସହିତେ ସତ୍ୟଭାମା ଚୁମ୍ବ ଦେଇ
ପରମାନନ୍ଦ ଉଚ୍ଛବ ହାରିବନ୍ତି ହୋଇ । ୧୩ ।

ଶୁଭଲଗ୍ନ ଯୋଗ ଘେନି ବନ୍ଧ କଲେ ବେନି
ଯଥାବିଧି ଉଚିତ ବେଦୀର ବେଳ ଘେନି ।
ଅନାଦି-ନାଥର ଏହୁ ବହୁରୂପ ଲୀଳା
ଲୋକ ରଞ୍ଜ ନିମନ୍ତେ ନାନା ଚରିତ କଲା ।
ବ୍ରହ୍ମାକୁ ଗୋଚର ନୁହେଁ ମହିମା ଯାହାର
ବଚନେ କେ କହିବ ମନକୁ ଅଗୋଚର । ୧୪ ।

୧୪-୧ :—ଶୁଭଲଗ୍ନେ ବନ୍ଧ କରାଇଲେକ ସେ ବେନ (ଖ)
୧୪-୪ ।—ଲୋକର ଧାରଣ ପାଇଁ ନାମ ଭବେ ହେଲା ।

---

୧୩ । ଅଖିଳ ମଙ୍ଗଳ—ଶ୍ରୀକୃଷ୍ଣ । ହରପ୍ରିୟା କୁଳ—କୃଷ୍ଣଙ୍କ ଦାସମାନେ ।
୧୪ । ବହୁ ରୂପ ଲୀଳା—ନାନାପ୍ରକାର ରୂପ ଧରି ଖେଳିବା । ଲୋକ ରଞ୍ଜ—ଲୋକଙ୍କୁ ରଞ୍ଜେଇବା ବା ମନ୍ତାଇବା ।

ହରିର ଯେ ଅନୁଗତ ଲୀଳାରଙ୍ଗ ଯେତେ
ସାହିତ୍ୟ ସଙ୍ଗୀତ ନାନା କଉତୁକ ମତେ ।
ମହାଜଳନିଧି ମତ ପରିମାଣ ନାହିଁ
ଯେ ଯେତେ ପଶି ପାରଇ ତେତେକ ଜାଣଇ ।
ତଥାପି ବୁଦ୍ଧିରେ କେହ୍ନ ବୋଲନ୍ତି ଅପାର
ଶାସ୍ତ୍ର ଦୃଷ୍ଟି ଏ ଅଳପ ଅନୁଭବ ସାର । ୧୫ ।

ରସିକ ସୁଜନ ଜନେ ବୁଝ ଏହୁ ରସ
ଶୁଣିଣ ସଫଳ କର ତୃଷା-ଅଭିଳାଷ ।
ନୀଳଗିରି-ନାୟକ କମଳାଦେବୀ-ପତି
ତାହାର ପଦ୍ମପାଦକୁ ରତୁ ମୋର ମତି ।
କହଇ ଶିଶୁଶଙ୍କର ତୁଚ୍ଛ ବୁଦ୍ଧିହୀନ
ଦ୍ୱାଦଶ ଛାନ୍ଦରେ ତୃଷା ହୋଇଲା ସଂପୂର୍ଣ୍ଣ । ୧୬ ।

---

୧୫-୩—ଯଥାବଧି ଜଡି କେତ୍ରୁ କହନ୍ତି ଅପାର (କ) । ୧୬-୪—ଶଙ୍କରଙ୍କ ଦାସଙ୍କୁ ତଳଯେ ମୋର ମତି (ଖ), ଶଙ୍କର ତଳ ଦାସ ଦାସଙ୍କ ମୋ ମତି (ଗ) ।

---

୧୫ । ମହାଜଳନିଧି ମତ—ସମୁଦ୍ର ସଦୃଶ ।
୧୬ । ନୀଳଗିରି ନାୟକ—ଜଗନ୍ନାଥ । କମଳାଦେବୀ—ଲକ୍ଷ୍ମୀ ।

ଇତି ଦ୍ୱାଦଶ ଛାନ୍ଦର ତୃଷା-ଉଲ୍ଲାସିନୀ ଟୀକା ସମାପ୍ତ ।

